ନୃସିଂହ ଦେଖିଯାଇଁ କୈଲ ଦଣ୍ଡବତ ପ୍ରନତି,
ପ୍ରେମାବେଶେ କୈଲ ବହୁ ନୃତ୍ୟ ଗୀତ ସ୍ତୁତି ।

ଶ୍ଳୋକ—ଉଗ୍ରଦ୍ୱୋପ୍ୟନୁଗ୍ରବାପ୍ୟୁଂ ସଦ୍ଭକ୍ତାନାଂ ନୃକେଶରୀ,
କେଶରୀବ ସ୍ୱପୋତାନା ମନ୍ୟେଷାମୁଗ୍ର ବିକ୍ରମଃ ।

ଅ— ଏଇମତ ନାନା ଶ୍ଳୋକ ପଢ଼ି ସ୍ତୁତି କୈଲ,
ନୃସିଂହ ସେବକ ମାଳ୍ ପ୍ରସାଦ ଆନି ଦଲ ।

ଅ— ପ୍ରଭୁ ଆନନ୍ଦିତ ହୈଲ,
ପାଇଯାଇଁ ପ୍ରସାଦ ମାଲ, ପ୍ରଭୁ ଆନନ୍ଦିତ ହୈଲ ।
ସ୍ତୁତି ପଢ଼ି ନୃତ୍ୟ କୈଲ, ପ୍ରଭୁ ଆନନ୍ଦିତ ହୈଲ ।

ପ— ପୂର୍ବ୍ବବତ କୂର୍ମ ବିପ୍ର ନିମନ୍ତ୍ରଣ କୈଲ
ସେହି ରାତ୍ର ତାହାଁ ରହି ଗମନ କରିଲ ହେ ।
ପ୍ରଭାତେ ଚଳୟେ ପ୍ରଭୁ ପ୍ରେମର ଆବେଶେ,
ଦିଗ ବିଦିଗ ନାହିଁ ରାତ୍ର ଦିବସେ ହେ ।
ପୂର୍ବ୍ବବତ ବୈଷ୍ଣବ କରିଲ ଲୋକଗଣେ,
ଗୋଦାବରୀ ତୀରେ ପ୍ରବେଶିଲ କତୋଦିନେ ।
ଗୋଦାବରୀ ପାର ହଇ କରିଲ ସ୍ନାହାନ,
ଆନନ୍ଦେ କରେନ ପ୍ରଭୁ କତ ନତ୍ୟ ଗାନ ହେ ।
ଘାଟ ଛାଡ଼ି କତୋଦୂରେ ଜଲ ସନ୍ନିଧାନେ,
ବସି ପ୍ରଭୁ କରେ କୃଷ୍ଣ ନାମ ସଂକୀର୍ତ୍ତନେ ହେ ।

ଅ— ସ୍ୱରେର ଗଦ୍‌ଗଦେ,
ପୁଲକ ପୂରିତ ଅଙ୍ଗେ, ସ୍ୱରେର ଗଦ୍‌ଗଦେ ।
ହରି ବୋଲେ ଉଚ୍ଚନାଦେ, ସ୍ୱରେର ଗଦ୍‌ଗଦେ ।

—୨୩—

ଅ— ହେନ କାଳେ ଅୟେ ରାମାନନ୍ଦ ରାୟେ
ଦୋଳପରେ ଅରୋହଣ ହେ,
ଗୋଦାବରୀ ତୀରେ ନୃତ୍ୟକୃତ୍ୟ କରେ
ସଙ୍ଗେ କେତେ ଶତଜନ ହେ ।
ନାନାବିଧ ବାଦ୍ୟ ବାୟେ ପାରିଷଦ
ଉଠେ ଜୟ ଜୟ ନାଦ ହେ,
କେ ସ୍ତୁତି ପଠନ କରି ଉଚ୍ଚ ସ୍ୱନ
ନୃତ୍ୟ ଗୀତ ନାନାବିଧ ହେ ।
ବିଧିମତେ ସ୍ନାନ କରିୟାଁ ତର୍ପଣ
ପ୍ରଭୁ ଦେଖି ଚଞ୍ଚେ ଟାୟେ ହେ ।
ସେଇ ରାମରାୟ ଜାନୟାଁ ନିଶ୍ଚୟ
ମିଳିବାରେ ମନ ଧାୟେ ହେ । ୩ ।
ତଥାପି ସେ ହୃଦ କରିୟାଁ ଧଇର୍ଯ୍ୟ
ବସି ଉଚ୍ଚେ ହରିବୋଲେ ହେ,
ଶୁନି ରାମ ରାୟ ଶୀଘ୍ର ଆସି ତାୟ
ପ୍ରଭୁ ଶୋଭା ଦେଖି ମିଲେ ହେ ।
ସୂର୍ଯ୍ୟ ତେଜ ସମ ଅରୁନ ବସନ
ସୁବଳିତ ପ୍ରକାଣ୍ଡ ଦେହ ହେ ।
କମଲ ଲୋଚନ ରୂପେ ଅଭିରାମ
ଦେଖି ଚମତ୍କାର ହୟ ହେ ।

ଅ— ରାମାନନ୍ଦ ରାୟ—
ଉଚ୍ଚେ ହରି ବୋଲି ଧାଇଁ, ରାମାନନ୍ଦ ରାୟ ।
ସାଷ୍ଟାଙ୍ଗେ ଦଣ୍ଡବତ ହୟ, ରାମାନନ୍ଦ ରାୟ ।

ଝୁ—    କରିଲ ପ୍ରଣାମ    ଦେଖି ପ୍ରଭୁ ପୁନ
ବୋଲେ ବୋଲ କୃଷ୍ଣ କୃଷ୍ଣ ହେ,
ତାରେ ଆଲିଙ୍ଗିତେ    ପ୍ରଭୁ ଭବେ ଚଳେ
ଦେଖି ହୟ ଅତି ତୁଷ୍ଟ ହେ ।
ତଥାପି ପୁଛୟେ    ତୁମି ରାମ ରାୟେ,
ରାୟ କହେ ଶୂଦ୍ର ମନ୍ଦ ହେ,
ଶୁନି ପ୍ରଭୁ ପୁନ    ଦୃଢ଼େ ଆଲିଙ୍ଗନ
କରି ଆନନ୍ଦେ ଗଦ୍‌ଗଦ୍‌ ହେ ।

ଅ—    ହଇଲ ଅସ୍ଥିର,
କମ୍ପେ ସ୍ୱେଦେ ଅଶ୍ରୁ ଧାର,    ହଇଲ ଅସ୍ଥିର ।
କୃଷ୍ଣ ବୋଲେ ଉଚ୍ଚ ସ୍ୱର,    ହଇଲ ଅସ୍ଥିର ।

—୨୫—

ଚି—ଦେଖିୟାଁ ବ୍ରାହ୍ମଣ    ବୈଦିକାଦି ଜନ
ହୟେ ଚମତ୍କାର ମନେ,
ଯେ ସନ୍ନ୍ୟାସୀ ଜନ    ସୂର୍ଯ୍ୟ ତେଜ ସମ
କରେ ଶୂଦ୍ର ଆଲିଙ୍ଗନେ ।
ଯେଉ ରାମ ରାଜ    ପଣ୍ଡିତ ଗାମ୍ଭୀର୍ଯ୍ୟ
ସନ୍ନାସୀ ସ୍ପର୍ଶେ ବକ୍ଷେର
ମିଛ ବେଦିଜନ    ଭାବେ ମନେ ମନ
ଭକ୍ତ ଚରନ ଶାନ୍ତ କୈଲ ।

—୨୬—

ପଦ—    ସ୍ଥିର ହୋଇ ଦୁହାଁ ବସି    ପ୍ରଭୁ ପୁଛନ୍ତି ମନ୍ଦେ ହାସି
ସାର୍ବଭୌମ ଆମାରେ କହିଲ

ତୁମାର ଯତେକ ସ୍ତବ ମିଳିତେ କୈଲ ଯତନ
ତାର କୃପାୟ ତୁମାରେ ପାଇଲ ହେ ।
ରାୟ କହେ ସାର୍ବଭୌମ କରେ ମୋରେ ଉତ୍କଣ୍ଠନ
ତୁମାପଦ ହୟେ ସାବଧାନ
ସଫଳ ମାନୁଷ ଜନ୍ମ ପାଇଲାମ୍ ତୁମା ଦର୍ଶନ
ଆଜ ମୁଁଇ ଅଟେ ଧନ୍ୟ ଧନ୍ୟ ହେ ।

ଅ— ଆଜ ମୁଁଇ ହେଇ ଧନ୍ୟ,
ତୁମାର ଦର୍ଶନେ ଜାନ, ଆଜ ମୁଁଇ ହେଇ ଧନ୍ୟ ।
କହ କରୟେ ପ୍ରଣାମ, ଆଜ ମୁଁଇ ହେଇ ମନ୍ୟ ।

—୨୭—

ପ୍ରଭୁ ଆଲିଙ୍ଗନ ଯବେ, ରାୟ ନିଷେଧୟେ ତବେ
କାହାଁ ତୁମି ସାକ୍ଷାତ୍ ନାରାୟଣ,
ମୁଁଇ ଦାସ ଶୂଦ୍ର ମନ୍ଦ, ମୋର ସ୍ପର୍ଶ ଘୃଣା ବେଦ
ତୁମା କୃପାୟ କର ନିନ୍ଦା କର୍ମ ହେ ।
ପରମ ଦୟାଳୁ ତୁମା, ପତିତପାବନ ନାମା
ଜାନିଲ ଜାନିଲ ନିଶ୍ଚେ ଆମି
ମୋହାନ୍ତ ସ୍ୱଭାବ ଏହ, ତାରତେ ପାମର ଯେହ
ନିଜ କାର୍ଯ୍ୟ ପ୍ରାୟେ ମନେ ମାନ ହେ ।

ଅ— ତାରତେ ଜଗତ
ମୋହାନ୍ତ ସ୍ୱଭାବ ନିତ୍ୟ, ତାରତେ ଜଗତ ।
ଗୃହୀ ଦୀନ ଜନେ ଚେତ, ତାରତେ ଜଗତ ।

ଶ୍ଳୋକ—ମହଦ୍ୱି ଚଳନଂ ନୃଣାଂ ଗୃହିଣାଂ ଦୀନଚେତସାମ୍
ନିଶ୍ରେୟସାୟ ଭଗବାନ୍ କଳ୍ପତେ ନାନ୍ୟଥା କ୍ୱଚିତ୍ ।

ଝୁ— ମୋ ସଙ୍ଗେ ସହସ୍ର ଜନ, ବୈଦିକ ବ୍ରାହ୍ମଣଗଣ
ତୁମା ଦର୍ଶନେ ଦ୍ରବୀଭୂତ ମନ,
କୃଷ୍ଣ କୃଷ୍ଣ ବାଣୀ ପୂର୍ଣ୍ଣ ସବାର ବଦନେ ଜାନ
ପୁଲକାଙ୍ଗ ଅଶ୍ରୁ ନୟାନ ।
ତୁମି ସାକ୍ଷାତ୍ ପରମବ୍ରହ୍ମ, କାବେ ଅପ୍ରାକୃତ ପ୍ରେମ
ଦାନ କର ବୁଲନ୍ଧ ଅସନ,
ପ୍ରଭୁ କହେ ତୁମି ଜାନ ମହାଭାଗବତ ତମ
ତୁମାଁ ଦର୍ଶନେ ସବାର କୃଷ୍ଣ ପ୍ରେମ ।
ଅମି ମାୟାବାଦ ସନ୍ନ୍ୟାସୀ ତୁମାର ସ୍ପର୍ଶେ ପ୍ରେମେ ଭାସି
ଜାନି ଦୟା କୈଲ ସାର୍ବଭୌମ,
ତେ ଜାନେ କଠିନ ଅର ସାଧୁତେ ହୃଦୟ ମୋର
ତୁମାର ପାଶେ ପେଷିଅଛେ ପୁନ ।
ଅ— ଯେଇ ଭାବେ ଦୋୟ ଜନେ,
ସ୍ତୁତି କରେ ଦୁହାଁର ଗୁନେ, ଯେଇ ଭାବେ ଦୋୟ ଜନେ ।
ପ୍ରେମତେ ହୟେ ମଗନେ, ଯେଇ ଭାବେ ଦୋୟ ଜନେ ।

—୨୯—

ଅ— ଯେକାଲେ ବୈଦିକ ଏକ ବ୍ରାହ୍ମଣ ବୈଷ୍ଣବମତ
ଦଣ୍ଡବତ କରି କରେ ନିମନ୍ତନ
ନିମନ୍ତନ ମାନି ତାର ବୈଷ୍ଣବ ଜାନିୟାଁ ଅର
ରାୟେ କହେ ମିଲ ମୋରେ ପୁନ ।
ତୁମା ମୁଖେ କୃଷ୍ଣକଥା ଶୁଣିତେ ଅମାର ଇଚ୍ଛା
ରାୟ କହେ ମୋର ସର୍ବେ ପ୍ରାନ,
ଦନ ପାଞ୍ଚ ସାତ ରହ ଶୋଧ ଯେ ପାମର ଦେହ
କହ ଚଲେ କରୟାଁ ପ୍ରନାମ ।

ଏଥା ହୈତେ ପ୍ରଭୁ ଚଳି     ବିପ୍ର ଗୃହେ ଭିକ୍ଷା କରି
ଦୁହିଁ କ୍ଷଣେ ସନ୍ଧ୍ୟା ଆସି ହେଲ,
ପ୍ରଭୁ ସ୍ନାନ କୃତ ସାରି,     ଅଛେ ରାୟ ପଥ ହେରି
ଏକ ଭୃତ୍ୟ ସଙ୍ଗେ ରାୟ ଆଇଲ ।
ନମସ୍କାର କୈଲ ଯବେ,     ପ୍ରଭୁ ଆଲିଙ୍ଗନ ଦେବେ
ଦୁହିଁ ମିଳି ସେଖାନେ ବସୟେ,
ପ୍ରଭୁ କହେ ପଢ଼ ଶ୍ଳୋକ,     ସାଧ୍ୟର ନିର୍ଣ୍ଣୟ ଲାଗ
ରାୟ କହେ ସ୍ୱଧର୍ମାଚରଣ ଭକ୍ତି ହଏ ।

ପ୍ର— ଏହୁସ୍ତବେ ବହୁ ଶ୍ଳୋକ,
ବାହ୍ୟ ଅନ୍ତରଙ୍ଗ ଯତ,     ଏହୁ ସ୍ତବେ ବହୁ ଶ୍ଳୋକ ।
କରେ ରାୟ ପ୍ରତିବାକ୍ୟ,     ଏହୁ ସ୍ତବେ ବହୁ ଶ୍ଳୋକ ।
ସାର କୈଲ ପଞ୍ଚଶ୍ଳୋକ,     ଏହୁ ସ୍ତବେ ବହୁ ଶୋକ ।

—୩୦—

ପ୍ର— ପ୍ରଭୁ ପୁଛେ ରାମାନନ୍ଦ କରେନ ଉତ୍ତର *
ଏଇମତ ସେଇ ସ୍ଥାନେ କଥା ପରସ୍ପର ।
ପ୍ରଭୁ ପୁଛେ କୋନ ବିଦ୍ୟା ବିଦ୍ୟା ମଧ୍ୟେ ସାର
ରାୟ କହେ କୃଷ୍ଣ ଭକ୍ତି ବିନା ନାହିଁ ଆର ।
କୀର୍ତ୍ତି ମଧ୍ୟେ ଜୀବେର ସାର କୋନ କୀର୍ତ୍ତି
କୃଷ୍ଣ ଭକ୍ତ ବୋଲି ଯାର ନାମ ହୟେ ଖ୍ୟାତି ।

---

ରାୟ ରାମାନନ୍ଦଙ୍କ ସହିତ ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର ଯେ ଚତୁର୍ଦ୍ଦଶ ଶ୍ଳୋକର ପ୍ରଶ୍ନୋତ୍ତର ହୋଇଥିଲା ସେ ସବୁ ନିଗୂଢ଼ ତତ୍ତ୍ୱ ଥିବାରୁ ସ୍ପଷ୍ଟ ପୂର୍ଣ୍ଣ ଲିଖନ ସ୍ୱରୂପରେ ପ୍ରକାଶ କରାପାରି ନାହିଁ ।

ସଂଗ୍ରାହକ

ସମ୍ପତ୍ତିର ମଧ୍ୟେ ଜୀବେର କୋନ ସମ୍ପତ୍ତି ଗଣି
ରାଧାକୃଷ୍ଣପ୍ରେମୀ ଯେଇ ସେଇ ମହାଧନୀ ।
ଦୁଃଖ ମଧ୍ୟେ କୋନ ଦୁଃଖ ହୟେ ଗୁରୁତର
କୃଷ୍ଣ ଭକ୍ତ ସଙ୍ଗ ସ୍ଥଳେ ଦୁଃଖ ନାହିଁ ଅର ।
ଗାନ ମଧ୍ୟେ କୋନ ଗାନ ଜୀବେର ନିଜ ଧର୍ମ
ରାଧାକୃଷ୍ଣପ୍ରେମ କେଲି ଯେ ଗୀତର ମର୍ମ ।
ତାହାର ସ୍ମରନ ଜୀବ କରେ ଅନୁକ୍ଷନ
କୃଷ୍ଣ ନାମ ଗୁଣ ଲୀଳା ପ୍ରଧାନ ସ୍ମରଣ ।
ସର୍ବ ତେଜି ଜୀବେର କର୍ତ୍ତବ୍ୟ ଯାହାଁ ବାସ
ବୃନ୍ଦାବନ ଭୂମି ଯାହାଁ ନିତ୍ୟ ଲୀଳା ରାସ ।
ଅ— ସେଇ ଭାବେ ସାଧନ,
ଯେ କରଛେ ଉପାସନ, ସେଇ ଭାବେ ସାଧନ ।
ପାବେ କୃଷ୍ଣେର ଚରନ, ସେଇ ଭାବେ ସାଧନ ।
ଶୁନି ପ୍ରଭୁ ହର୍ଷ ମନ, ସେଇ ଭାବେ ସାଧନ ।

—୩୧—

ପ— ପ୍ରଭୁ କହେ ସେଇ ସାଧ୍ୟ ହୟେ ସୁନିଶ୍ଚୟ
କୃପା କରି କହ ଯଦି ଅଗେ କିଛୁ ହୟ ହେ ।
ସନ୍ନ୍ୟାସୀ ବୋଲିୟାଁ ମୋରେ ନା କର ବାଞ୍ଚନ
ରାଧା କୃଷ୍ଣ ତତ୍ତ୍ୱ କହ ପୂର୍ଣ୍ଣ କର ମନ ହେ ।
କିବା ବିପ୍ର କି ସନ୍ନ୍ୟାସୀ କିବା ଶୂଦ୍ର ନୟ
ଯେ କୃଷ୍ଣତତ୍ତ୍ୱବେତ୍ତା ସେଇ ଗୁରୁ ହୟ ହେ ।
ଅ— କହ କହ ରାମ ରାୟ,
କୃଷ୍ଣ ପାବାର କି ଉପାୟ, କହ କହ ରାମ ରାୟ ।
ଯେନ ତରି ଭବ ମୋହ, କହ କହ ରାମ ରାୟ ।

—୩୨—

ଝୁ— ସାଧୁ କହେ ଯେ ବୁଝାୟୁ ସେଇ କହୁ ଅମି
କ୍ଷ ବର୍ଣ୍ଣିବ ଭଲ ମନ୍ଦ କହୁ ନାହିଁ ଜାଣ ହେ ।
ତ୍ରିଭୁବନ ମାଝେ କୋନ ଅଛେ ହେନ ଧୀର
ଯେ ତୁମାର ମାୟା ନାଟେ ହଇବେକ ସ୍ଥିର ହେ ।
ଅ— ମୋରେ ପ୍ରଭୁ ଦୟେ କର,
ମୁହିଁ ଅଯୋଗ୍ୟ ପାମର, ମୋରେ ପ୍ରଭୁ ଦୟେ କର ।
ଭକତେ କର ପ୍ରଶ୍ରର, ମୋରେ ପ୍ରଭୁ ଦୟେ କର ।
ତୁମି ଦୟାର ସାଗର, ମୋରେ ପ୍ରଭୁ ଦୟେ କର ।

—୩୭—

## ସଖୀ ଭାବ

ଝ— ମୋର ମୁଖେ ବକ୍ତା ତୁମି ପୁନ ହୁଅ ଶ୍ରୋତା
ଅତ୍ୟନ୍ତର ହାସ୍ୟ ଯେ ତ ସାଧନ ବ୍ୟବସ୍ଥା ହେ ।
ରାଧା କୃଷ୍ଣ ଲୀଳ ଯେ ତ ଅଛ ଗୂଢ଼ତର
ସବେଯେ ସଖୀ ଜନେର ଯେହା ଅଧିକାର ।
ସଖୀ ହଇତେ ହୟେ ଯେହୁ ଲୀଳାର ବସ୍ତାର
ସଖୀ ସେବା ବିନା ଙ୍କବେ ନାହିଁ ପ୍ରଢକାର ।
ସଖୀ ବିନା ଯେଇ ଲୀଳ ଅନେ ନାହିଁ ଗଢ
ସଖୀ ଲ୍ଲବେ ତାରେ ଯେଇ କରେ ଅନୁଗଢ ।
ରାଧା କୃଷ୍ଣ କୁଞ୍ଜ ସେବା ସେଇ ଜନା ପାୟ
ସେ ସେବା ପାଇତେ ଅନେ ନାହିଁକ ଉପାୟ ।
ଅ— ଗଢ ନାହିଁ ଗଢ ନାହିଁ;
କଳିଯୁଗେ ଅନେ କାହିଁ, ଗଢ ନାହିଁ ଗଢ ନାହିଁ ।
ଗୋପୀ ଭାବେ ଭକ୍ତ ଦାଇ, ଗଢ ନାହିଁ ଗଢ ନାହିଁ ।

—୩୮—

ଶୋକ— ସଖୀନା ସଙ୍ଗିନା ରୁଷା ଅସ୍ମାନାଂ ବାସନାମୟ
ଅଷ୍ଟଂ ସେବାପରାଭୂତଂ କୃପାଲଙ୍କାର ଭୂଷିତାଃ ।
ସେବା ସାଧକ ରୁପେଣଂ ପ୍ରେମ ରୁପିଣ ଛନ୍ଦତଂ
ତଭାବନଷ୍ଟନାକାର୍ଯ୍ୟଂ ବ୍ରଜଲୋକାନୁସାରୟେତ୍ ।
ଝୁ— ସଖୀ ଅନୁଗତ ବିନୁ ଐଶ୍ୱର୍ଯ୍ୟ ସେବନେ
ଭଜିଲେ ନା ପାୟେ ବ୍ରଜେ ବ୍ରଜେନ୍ଦ୍ରନନ୍ଦନେ ।
ତାହାତେ ଦୃଷ୍ଟାନ୍ତ ଲକ୍ଷ୍ମୀ କରିଲ ସେବନ
ତଥାପି ନ ପାଇଲ ବ୍ରଜେ ବ୍ରଜେନ୍ଦ୍ରନନ୍ଦନ ।
ଅ— ଐଶ୍ୱର୍ଯ୍ୟ ସେବନେ,
ଦେଖ ଲକ୍ଷ୍ମୀନାରାୟଣେ, ଐଶ୍ୱର୍ଯ୍ୟ ସେବନେ ।
ନୋହେ ଗୋପୀଙ୍କ ସମାନେ, ଐଶ୍ୱର୍ଯ୍ୟ ସେବନେ ।

—୩୫—

ଶ୍ଳୋକ—ନ୍ୟାୟଂ ଶ୍ରିୟୋଽଙ୍ଗ ଉନତାନ୍ତରତେଃ
ପ୍ରସାଦଂ ସ୍ୱର୍ଯୋଷିତାଂ ନଳିନଗନ୍ଧ ରୁଚାଂ କୁତଂ ।
ରାସୋତ୍ସବେ ଽସା ଭୁଜଦଣ୍ଡ ଗୃହୀତ
କଣ୍ଠଲବ୍ଧାଶି ଯାଂ ଉଦଗାଦ୍ବ୍ରଜସୁନ୍ଦରୀଣାମ୍ ।
ଝୁ— ଅତ ଶୁନି ପ୍ରଭୁ ରାୟେ କଇଲେ ଆଲିଙ୍ଗନ
ଦୋହେଁ ଜନ ପ୍ରେମାବେଶେ କରିଲ କ୍ରନ୍ଦନ ।
ଯେହିମତେ ପ୍ରେମାବେଶେ ରାତି ପୋହାଇଲ,
ପ୍ରାତଃକାଲେ ନିଜ ନିଜ କାର୍ଯ୍ୟେ ଦୁହେଁ। ଗେଲ ।
ସାୟଂକାଲେ ରାୟ ପୁନ ଆସିୟାଁ ମିଳୟେ
ପ୍ରଶ୍ନୋତ୍ତର ଗୋଷ୍ଠି କରି ପ୍ରେମାବେଶ ହଏ ।
ବିଦାୟ ସମୟେ ପ୍ରଭୁ ଚରଣ ଧରିୟାଁ,
ରାମାନନ୍ଦେ କହେ କିଛୁ ମିନତି କରିୟାଁ ।

ମୋରେ କୃପା କର ତୁମ୍ଭ ସ୍ୱେଚ୍ଛା ଅଗମନ'
ଦନା କତ ରହ ଶୋଧ ମୋର ଦୁଷ୍ଟ ମନ ।
ପ୍ରଭୁ କହେ ଅମି ଅଭକ୍ତମ୍ ଶୁନ ତବ ସ୍ଥାନ
କୃଷ୍ଣ କଥା ଶୁନ ଶୁଦ୍ଧ କରିବତେ ମନ ।
ନୀଳାଚଳେ ତୁମ୍ଭ ଆମାର ହବ ଏକ ସଙ୍ଗେ
ତୁମ୍ଭ ସଙ୍ଗେ ବଞ୍ଚିବ କାଲ କୃଷ୍ଣ କଥା ରଙ୍ଗେ ।

ଅ— ଅନେ ନାଇଁ ମୋର ମନ,
ଯେଇ ସଦାଇ ଭ୍ରବନ, ଅନେ ନାଇଁ ମୋର ମନ ।
ଯେଭବେ ଯାଉ ଜୀବନ, ଅନେ ନାଇଁ ମୋର ମନ ।

—୩୨—

ଅ— ଶୁନ ରାମାନନ୍ଦ   ଅଛହୁଁ ବିଷାଦ
ପୁଛେ ଯୋଡ଼ ବେନ କର ହେ
କହ କୃପାମୟ,   କରିଯୁଁ ସଦୟ
ସଂଶୟ ଛେଦ ଅମାର ହେ ।
ପହିଲେ ଦର୍ଶନ   ସନ୍ୟାସୀ ଲକ୍ଷଣ
ପୁନଃ ଦେଖି ଗୋପୀ ରୂପ ହେ
ତ୍ରିଭଙ୍ଗିମା ଠାନ   ବଙ୍କିମା ଗ୍ରୀହାନ
ଭାବିଛ ରାଧା ସ୍ୱରୂପ ହେ ।

ଅ— ଏ କି ଚମତ୍କାର,
କହେ ଯୋଡ଼ ବେନ କର, ଏ କି ଚମତ୍କାର ।
କହୁ ନେତ୍ରୁ ଝରେ ନୀର, ଏ କି ଚମତ୍କାର ।

—୩୩—

ଝୁ— ଛାଡ଼ ଭାଷା ଭୂର   ନା କର ହେ ଚୌର
ଜାନଲମ୍ ତୁମାର ମର୍ମ ହେ

ବ୍ରଜ ଭାବ ଯତ — କର ଆସ୍ୱାଦତ
ରମା ହୟ ରାଧା ପ୍ରେମ ହେ ।

ଅ— ଜାଣିଲୁମ୍ ନିଶ୍ଚୟ,
ପଢ଼ତରେ ପ୍ରେମ ଭଣ୍ଡାର ଲୁଚାୟ, ଜାଣିଲୁମ୍ ନିଶ୍ଚୟ ।
ଆମା ତାରିବାକେ ଆସିଲୁମ୍ ଏଥାୟ, ଜାଣିଲୁମ୍ ନିଶ୍ଚୟ ।

—ଔ—

ଝୁ— ରାୟର ବଚନ — ଶୁଣି ଶ୍ରୀ ଚୈତନ୍ୟ
ପ୍ରଭୁ ମନେ ମନେ ହାସି ହେ
ରସରାଜ ମହାଭାବ — ଯେବ ଠାବ
ଦୋୟେ ଯେବ ହଇଲ ଆସି ହେ ।
ଦେଖି ରାମରାୟ — ହଇଲ ମୂର୍ଚ୍ଛାୟ
ତଳ ପଡ଼ିଲ ଭୂତଲେ ହେ
ପ୍ରଭୁ ହସ୍ତ ସ୍ପର୍ଶ — କରାଏ ସଚେତ
ପୁନ ଦେଖି ପୂର୍ବ ରୂପ ହେଲେ ହେ ।
କରି ଆଲିଙ୍ଗନ — କହେ ପ୍ରଭୁ ପୁନ
ତୁମି ହ ଆମାର ପ୍ରାଣ ସମ ହେ
ତେନ୍ତୁ ହେଏ ରୂପ — ଦେଖିଲ ପ୍ରତ୍ୟକ୍ଷ
ଆନ କେ ବୁଝିବ ଭଜନ ହେ ।
ଗୌର ଦେହ ମୋର — ନା ହୟେ କେବଳ
ରାଧାଙ୍ଗ ହୟେ ସ୍ପର୍ଶନ ହେ
ବ୍ରଜବାଳ ବିନେ — ନା ସ୍ପର୍ଶୟେ ଆନେ
ରାଧାଭାବେ କରେ ଆସ୍ୱାଦନ ହେ ।

ଅ— ଜାନହ ନିଶ୍ଚୟ,
ତୁମାରେ କହିଲମ୍ ରାମରାୟ ଯେହ୍ନା, ଜାନହ ନିଶ୍ଚୟ
ରାଧା ପ୍ରେମତତ୍ତ୍ୱ ଜଗତେ ବଢାୟ, ଜାନହ ନିଶ୍ଚୟ ।

—୩୯—

ଝୁ— ସ୍ୱରୂପତେ ରାଖହ ଧର୍ମ ନା କର ପ୍ରକାଶ,
ଆମାର ବାତୁଲ ଚେଷ୍ଟା ଲୋକେ ଉପହାସ ।
ଆମି ଏକ ବାତୁଲ ତୁମି ଦ୍ୱିତୀୟ ବାତୁଲ,
ଅତଏବ ତୁମା ଆମା ହୟେ ସମତୁଲ ।
ଯେଇମତ ଦଶଦିନ ରାମାନନ୍ଦ ସଙ୍ଗେ,
ସୁଖେ ପୁହାଇଲ କାଲ କୃଷ୍ଣ କଥା ରଙ୍ଗେ ।
ଆର ଦିନ ରାୟ ପାଶ ବିଦାୟ ମାଗିଲ,
ବିଦାୟ ସମୟେ ତାରେ କହିତେ ଅଜ୍ଞା ଦିଲ ।
ବିଷୟ ଛାଡ଼ିୟା ତୁମି ଚଲ ନୀଳାଚଲେ,
ଆମି ତୀର୍ଥ କରି ତାହାଁ ଆସିବ ଅଳ୍ପକାଳେ ।
ଅତବୋଲି ରାମାନନ୍ଦେ ଦିୟାଁ ଅଲିଙ୍ଗନ,
ତାରେ ବିଦା ଦିୟାଁ ଦକ୍ଷିଣେ କରିଲ ଗମନ ।
ଦକ୍ଷିଣ ଦେଶରେ ନାନାମତ ଲୋକ ବସେ ଯତ,
ପ୍ରଭୁ ଦେଖି ବୈଷ୍ଣବ ହୈଲ ଛାଡ଼ି ନିଜ ମତ ।
ସଂକ୍ଷେପେ କହିଲ ରାମାନନ୍ଦେର ମିଲନ,
ବିସ୍ତାରି କହିଛେ ସବ ଦାସ ବୃନ୍ଦାବନ ।

ଅ— ଚୈତନ୍ୟ ମଙ୍ଗଲେ,
ସକଲ ହୟେ ବିସ୍ତାରେ, ଚୈତନ୍ୟ ମଙ୍ଗଲେ ।

—୪୦—

ପ— ଚୈତନ୍ୟର ଈଶ୍ୱର ବ୍ୟାସ ଦାସ ବୃନ୍ଦାବନ,
ତାର କୃପାୟ କରି ତାର ଉଚ୍ଛିଷ୍ଟ ଚର୍ବଣ ।

ଅ— କି ବର୍ଣ୍ଣିବ ହେ,
ନିଗୂଢ଼ ଚୈତନ୍ୟଭାବ, କି ବର୍ଣ୍ଣିବ ହେ ।
ପ୍ରେମମୟୀ ଗୋପୀଭାବ, କି ବର୍ଣ୍ଣିବ ହେ ।

—୪୧—

ସ୍ୱରୂପ ଦାମୋଦର କଡ଼ଚା ଅନୁସାରେ,
ରାମାନନ୍ଦ ଲୀଳ କିଛୁ କହିଲ ପ୍ରଶ୍ନରେ ।
ସହିତେ ଚୈତନ୍ୟ ଲୀଳ ଘନ ଦୁଟ୍‌ଧପୁର,
ରାମାନନ୍ଦ ଲୀଳ ତାଏ ଖଣ୍ଡେର ପ୍ରଚୁର ।
ରାଧାକୃଷ୍ଣ ଲୀଳ ତାହେ କର୍ପୂର ମିଳନ,
ଭାଗ୍ୟବାନ ଯେ ଏହା କରୟେ ଶ୍ରବନ ।
ସର୍ବତତ୍ତ୍ୱ ଜ୍ଞାନହୟେ ଯେହାର ଶ୍ରବଣେ,
ପ୍ରେମ ଭକ୍ତି ପାୟେ ରାଧା କୃଷ୍ଣେର ଚରଣେ ।
ଅଲୌକିକ ଲୀଳ ଏ ଯାର ନା ହୟେ ବିଶ୍ୱାସ,
ଇହଲୋକେ ପରଲୋକେ ତାର ହଏ ନାଶ ।

ଅ— ଅଜି କି ଯେମନ ଜନ୍ମ ପାବେ,
ନିତାଇ ଗୌର ନାମ ନିବେ, ଅଜି କି ଏମନ ଜନ୍ମ ପାବେ ।

—୪୨—

ଅଲୌକିକ ଲୀଳ ଏହୁ ପରମ ନିଗୂଢ଼,
ବିଶ୍ୱାସେ ପାଇୟେ ଜାବେ ତର୍କେ ଅଢ ଦୂର ।
ରସଜ୍ଞ କୋକିଲ ଖାୟେ ପ୍ରେମାମ୍ର ବକୁଳ,
ଅରସଜ୍ଞ କାକ ଚୁମ୍ବେ ଜ୍ଞାନନିମ୍ବ ଫଲ ।

ଅଲୌକିକ ଲୀଳା ଅସ୍ବାଦୟେ ଶୁଦ୍ଧ ଜନ,
କୃଷ୍ଣ ପ୍ରେମାମୃତ ପାନ କରେ ଭାଗ୍ୟବାନ ।
ଚୈତନ୍ୟ ନିତ୍ୟାନନ୍ଦ ଅଦ୍ୱୈତ ଚରଣ,
ଯାହାର ବିଶ୍ୱାସ ତାହେ ମିଳେ ପ୍ରେମ ଧନ ।
ଶ୍ରୀରୂପ ରଘୁନାଥ ପଦେ ଯାର ଆଶ,
ଚୈତନ୍ୟ ଚରିତାମୃତ କହେ କୃଷ୍ଣ ଦାସ ।

ଅ— ଜଗତେ କରୁନା କରି,
ଲେଖିଅଛ ଏ ବିସ୍ତାରି, ଜଗତେ କରୁନା କରି ।
ନାମ ପ୍ରେମ ରତ୍ନାବଳୀ, ଜଗତେ କରୁନା କରି,
ଭାଗ୍ୟମାନେର ହୃଦାବଳୀ, ଜଗତେ କରୁନା କରି । *

—୪୩—

## ଦାକ୍ଷିଣାତ୍ୟ ପର୍ଯ୍ୟଟନ

ଶ୍ଳୋକ—ନାନାମତ ଗ୍ରାହ ଗ୍ରସ୍ତାନ ଦାକ୍ଷିଣାତ୍ୟ ଜନ ଦ୍ୱିପାନ୍
କୃପାରିଣା ବିମୁଚ୍ୟୈତାନ୍ ଗୌରଶ୍ଚକ୍ରେ ସବୈଷ୍ଣବାନ୍ ।

ଲ— ଦକ୍ଷିଣ ଗମନ ପ୍ରଭୁର ଅତି ବିଚକ୍ଷଣ,
ସହସ୍ର ସହସ୍ର ତୀର୍ଥ କରିଲ ଭ୍ରମଣ ।
ସେ ସବ ତୀର୍ଥର ସ୍ପର୍ଶେ ମହାତୀର୍ଥ ହୈଲ,
ସେଇ ଛଲେ ସେ ଦେଶର ଲୋକ ନିସ୍ତାରିଲ ।

* ମହାଶୟଗଣ, ଏ ମଧ୍ୟଲୀଳା ଅଷ୍ଟମ ପରିଚ୍ଛେଦ ରାୟ ରାମାନନ୍ଦ ମିଳନ ରାଗମାର୍ଗ ସୂଚେ ନିଗୂଢ଼ ପଥ ଅଟେ । ମାତ୍ର ସଙ୍କୋଚିନ ସୂଚେ କିଛି ଲେଖିବାକୁ ହୋଇଛି । ଦୋଷ କ୍ଷମା ଦେବେ ।

ସଂଗ୍ରାହକ

ସ୍ବ—	ସେ ସବ ତୀର୍ଥର ନାମ କରୟେ ଗଣନ,
କହତେ ନା ପାର୍ବ ତାର୍ କଥା ଅନୁକ୍ରମ ।
ପୂର୍ବବତ ପଥେ ଲୋକେ ପାୟେ ଦର୍ଶନ,
ଯେ ଗ୍ରାମେ ଯାଏ ବୈଷ୍ଣବ କତ ଶତଜନ ।
ଦକ୍ଷିଣ ଦେଶର ଲୋକ ଅନେକ ପ୍ରକାର,
କେହ ଜ୍ଞାନୀ କେହ କର୍ମୀ ଅନେକ ପ୍ରକାର ।
ଏଇ ସବ ଲୋକ ପ୍ରଭୁ ଦର୍ଶନ ପ୍ରଭାବେ,
ନିଜ ମତ ଛାଡ଼ି ବୈଷ୍ଣବ ହୟେଲେନ୍ ସବେ ହେ ।

ଅ—	କୃଷ୍ଣଦାସ ପଛେ ଯାୟେ
ତା ଭାଗ୍ୟ କହନାଯାୟେ, କୃଷ୍ଣଦାସ ପଛେ ଯାୟେ ।
ପ୍ରଭୁର ପ୍ରସାଦ ପାଏ, କୃଷ୍ଣଦାସ ପଛେ ଯାୟେ ।
ସକଲ ନେହେ ଦେଖୟେ, କୃଷ୍ଣଦାସ ପଛେ ଯାୟେ ।

—୪୪—

ସ—	ବୈଷ୍ଣବର ମଧ୍ୟେ ରାମଉପାସିକ ସବ
କେହ ତତ୍ତ୍ବବାଦୀ କେହ ହୟେ ଶ୍ରୀବୈଷ୍ଣବ ହେ ।
ସେ ସବ ବୈଷ୍ଣବ ମହାପ୍ରଭୁର ଦର୍ଶନେ
କୃଷ୍ଣ ଉପାସିକ ହଇଲ ଲୟେ କୃଷ୍ଣ ନାମେ ହେ ।

ଅ—	ପ୍ରଭୁର ଦର୍ଶନେ ସବ,
ଛାଡ଼ିଲ ପୂର୍ବ ସ୍ବଭାବ, ପ୍ରଭୁର ଦର୍ଶନେ ସବ ।
ଉଦେ ସାତ୍ତ୍ୱିକାଦ ଭାବ, ପ୍ରଭୁର ଦର୍ଶନେ ସବ

—୪୫—

ଅ—	ଚଲି ଗୌରହରି	ଦିଜ ଯେହେ ମିଳି
ରଘୁନାଥରେ ଦର୍ଶନ ହେ,

ସିଦ୍ଧ ମହାପାତ୍ର                    ନାମେ ଏକ ଭକ୍ତ
ରାମ ଉପାସିକ ଜାନ ହେ ।
ସ୍ୱଭାବ ବିବର୍ଜି                    କୃଷ୍ଣନାମ ହେଲ
ପ୍ରଭୁ ପୃଛେ ତାରେ ପୁନ ହେ,
ତୁମି ମହାତମ                    ଭଜ ରାମନାମ
କୃଷ୍ଣ ବୋଲ କକାରନ ହେ ।

ଅ— କୃଷ୍ଣ-ନାମେର ମହିମ,
ସିଦ୍ଧ ପାତ୍ର କହେ ପୁନ, ନାମେର ମହିମ ।
ତୁମାର ଦର୍ଶନେ ଜାନ, ନାମେର ମହିମ ।
ମୋର ଉଦେ କୃଷ୍ଣ ପ୍ରେମ, ନାମେର ମହିମ ।

—୪୨—

ଶ୍ଳୋକ—କୃଷ୍ଣ କୃଷ୍ଣେତି କୃଷ୍ଣେତି ଯେମାନେ ସ୍ମରନ୍ତି ନିତ୍ୟଶଃ
ଜଳଭିତ୍ତ୍ୱା ଯଥା ପଦ୍ମଂ ନରକାତ୍ ଧୁଧରାମିହଂ ।

ଝୁ— ସିଦ୍ଧକ୍ଷେତ୍ର ମାଝେ                    ବ୍ରାହ୍ମଣ ସମାଜେ
ବୌଦ୍ଧାଚାର୍ଯ୍ୟ ନାମେ ଖ୍ୟାତ ହେ
ପ୍ରଭୁର ମହିମ                    ଶୁଣି ମିଳେ ପୁଣ
ସଙ୍ଗେ ଶିଷ୍ୟ ଶତ ଶତ ହେ ।
ସେ ନବ ପ୍ରଶନ                    କରିଲ ବ୍ୟାଖ୍ୟାନ
ପ୍ରଭୁ ତା କୈଲ ଖଣ୍ଡନ ହେ
ଶୁଣି ବୌଦ୍ଧାଚାର୍ଯ୍ୟ                    ମନତେ ଅଶ୍ଚର୍ଯ୍ୟ
କରେ କୁତର୍କ ଘଟଣ ହେ ।
ଶିଷ୍ୟଗଣ ଲୟାଁ                    ପ୍ରଭୁ ନିମନ୍ତ୍ରିୟାଁ
ମହାପ୍ରସାଦ ବୋଲୟାଁ ହେ

ଅମେଧ ମାଂସାଦ ଥାଳରେ ସମ୍ବାଦ
ପ୍ରଭୁପାଶେ ପଠାଇଯାଁ ହେ ।
ଦେଖ ବୁଦ୍ଧିବଳ ସ୍ୱୈର ମହାବଳ
ପକ୍ଷୀ ଶୂନ୍ୟେ ପ୍ରବେଶିଲ ହେ
ଅଇଥାଳ ଧରି ଶୀଘ୍ର ଝମ୍ପ କରି
ଶୂନ୍ୟେ ଉଠାଇ ଅଣିଲ ହେ ।
ବୌଦ୍ଧାଚାର୍ଯ୍ୟ ପରେ କରଯେ ପ୍ରହାରେ
ଭୂମେ ମୂର୍ଚ୍ଛିତେ ପଡ଼ିଲ ହେ
କରି ସ୍ୱସ୍ତ୍ୟାୟନ ସର୍ବ ଶିଷ୍ୟଗଣ
ପ୍ରଭୁରେ ଶରଣ କଲ ହେ ।

ଅ— ହୋଇଯାଁ ଚେତନ,
ଭାବନ୍ତ ଅପ୍ରାଧସ୍ୱନ, ହୋଇଯାଁ ଚେତନ ।
ମାଗେ ପ୍ରଭୁରେ ଶରଣ, ହୋଇଯାଁ ଚେତନ ।

—୪୭—

ଅ— ମିଲି ସର୍ବେ ପୁଣ ପ୍ରଭୁର ଚରଣ
ଅପନା ଅପ୍ରାଧ ମାଗ ହେ
ବୌଦ୍ଧାଚାର୍ଯ୍ୟ ସଙ୍ଗେ ମିଳି ଶିଷ୍ୟଗଣେ
ପୁନ ପୁନ ପରଣାମି ହେ ।
ପ୍ରଭୁ ଅଲଙ୍ଘନ କରେ ଜଣେ ଜଣ
ଶକ୍ତି ସଞ୍ଚାରନ କୈଲ ହେ
ଦୟାଁ କୃଷ୍ଣ ମନ୍ତ୍ର ହୈଲ ନିଜ ଭକ୍ତ
ଓଥା ହୈତେ ଚଳିଗେଲ ହେ ।
ଚଳିଯାଁ ସଧୀରେ ଶ୍ରୀ ରଙ୍ଗକ୍ଷେତ୍ରରେ
ଶ୍ରୀରଙ୍ଗେ କୈଲ ଦର୍ଶନ ହେ,

ଚତୁର୍ମ୍ମାସ ତାହାଁ କୈଲ ବାସ
ତ୍ରିମଲ ଭଟ୍ଟ ସଦନ ହେ ।
ସେ ତ୍ରିମଲ ଭଟ୍ଟ କରେ ଗୀତା ପାଠ
ସାତ୍ତ୍ୱିକ ପୁଲକ ଅଙ୍ଗେ ହେ,
ଦେଖି ସର୍ବ୍ବଜନେ ହସନ୍ତି ତା ପ୍ରେମେ
ପ୍ରଭୁ ପୂଜା କରେ ଭାବେ ହେ ।

ଅ— କହ ଭଟ୍ଟ ମୋରେ,
ଗୀତା ପଢ଼ ଅଶୁଦ୍ଧରେ, କହ ଭଟ୍ଟ ମୋରେ ।
କି ସୁଖ ବୁଝ ଅନ୍ତରେ, କହ ଭଟ୍ଟ ମୋରେ ।
ଦେଖି ହସନ୍ତି ସକଳେ, କହ ଭଟ୍ଟ ମୋରେ ।

—୪୮—

ଦୁ— କହେ ଯୋଡ଼ ପାଣି ମୁଁ ଅଟେ ଅଜ୍ଞ
ମାତ୍ର ସ୍ନେହକଥା ଦେଖି ହେ,
ଅର୍ଜ୍ଜୁନର ରଥେ ବସେ ଜଗନ୍ନାଥେ
ଭାରତଯୁଦ୍ଧେ ସାରଥି ହେ ।
ଅର୍ଜ୍ଜୁନରେ କହୁ ତତ୍ତ୍ୱଜ୍ଞାନ ଯେତେ
ନ ଜାଣେ ମୁଁ କିଛି ଆନ ହେ,
ମୁଁ ସଦା ଅପ୍ରାଧୀ ନାମାଭ୍ୟାସେ ଲୋଭୀ
ପ୍ରଭୁ ଶୁଣ ଅଜ୍ଞଜନ ହେ ।
ତାର ଗୃହେ ରହ ଶ୍ରୀରଙ୍ଗେ ମିଶର
ତାହାରେ ନ ହୁଏ ଶୁଣ ହେ,
ଗୃହମାସ ପରେ ଚଳିଲ ସତ୍ୱରେ
ଭକ୍ତଚରନ ଧାଏଁ ସାଥ ହେ ।

ଅ— କରହ ଶ୍ରବଣ,
ଓହେ ଗୌର ଭକ୍ତଗଣ, କରହ ଶ୍ରବଣ ।
ପ୍ରଭୁ ଦକ୍ଷିଣ ଗମନ, କରହ ଶ୍ରବଣ ।

—୪୯—

# ମାଧବାଗ୍ରୁର୍ଯ୍ୟ ମିଳନ ଓ ମାଳାଦ୍ରି ଅଗମନ

ପଦ—କୃଷ୍ଣବେଣୀ ତୀର୍ଥେ ଯାଇ ମାଧବାଗ୍ରୁର୍ଯ୍ୟେ ଭେଟଇ
ବୁଝି ତାର ସାଧ୍ୟ ସାଧନ
ବ୍ରହ୍ମସଂହିତା କର୍ଣ୍ଣାମୃତ ପ୍ରଭୁ ଲେଖି ନିଜ ହସ୍ତ
ବିଲ୍ୱମଙ୍ଗଳର ଯେ ବିଧାନ ହେ ।
ନବ ଗୋଦାବରୀ ସ୍ନାନ କରି ପ୍ରଭୁ ପୁନ ପୁନ
ବହୁ ତୀର୍ଥ କରିଣ ଭ୍ରମଣ
ଫେରିଲ ବିଦ୍ୟାନଗରେ ମିଳିଲ ରାମାନନ୍ଦରେ
ରାୟ ଦେଖି ମହାନନ୍ଦ ମନ ହେ ।
କରେ କୋଟି ପ୍ରଣମିତ ପ୍ରଭୁ ଅଲିଙ୍ଗନେ ଶାନ୍ତ
କରାଇଣ ରାୟେ କହେ ଚଳ
ବିଷୟ ବନ୍ଧେଇ ମୁଞ୍ଚ କୃଷ୍ଣକାର୍ଯ୍ୟେ ଦିନ ବଞ୍ଚ
ତୁମା ଅମା ରହ ନୀଳାଚଳ ହେ ।

ଅ— ଅନେ ନାହିଁ ମୋର ମନ,
ତୁମା ସଙ୍ଗେ ବଞ୍ଚିବ ଦିନ, ଅନେ ନାହିଁ ମୋର ମନ ।
କୃଷ୍ଣଭାବେ ଯାଉ ଜୀବନ, ଅନେ ନାହିଁ ମୋର ମନ ।
ନିତ ମାଗେ ତୁମାଏ ଦାନ, ଅନେ ନାହିଁ ମୋର ମନ ।
(ଭୂଣେ) ନାମ ଗାଇ ଯାଉ ଜୀବନ, ଅନେ ନାହିଁ ମୋର ମନ ।

—୫୦—

ଅ—ଶୁଣ ରାମାନନ୍ଦ ବୋଲେ   ପ୍ରଭୁ ତୁମାର କୃପାରେ
ରାଜାରେ ମୁଁ ମାଗିଲି ବିଦାଇ
ଆପଣଙ୍କ ପଥ ଗୃହେଁ   ଆମ୍ଭି ଏଥେ ଅଛୁ ରହି
ତୁମା ପିଛେ ନୀଳାଚଳେ ଯାଇ ।
ଆପଣ ଚଳନ୍ତୁ ଆଗେ   ହାତୀ ଘୋଡ଼ା ମୋର ସଙ୍ଗେ
ମୁହିଁ ରାଜବିଷୟୀ ଅଧମ,
ପ୍ରଭୁ ଆନନ୍ଦରେ ଚଳେ   ଅଲାରନାଥରେ ମିଳେ
ବହୁ ଲୋକ ଦେଖି ଧାୟେଁ ପୁନ ।
କୃଷ୍ଣ ଦାସରେ ପଠାଇ   ନିତ୍ୟାନନ୍ଦଙ୍କେ ଜଣାଇ
ସାର୍ବଭୌମ ଆଦି ସର୍ବେ ଶୁଣି
ନିତ୍ୟାନନ୍ଦ ଜଗଦାନନ୍ଦ   ଦାମୋଦର ଶ୍ରୀମୁକୁନ୍ଦ
ଧାୟେଁ ସର୍ବେ ଲକ୍ଷନ୍ତୁ ନା ମାନି ।

ଅ—ଅନ୍ଧେ ଯେନ ଚକ୍ଷୁଦାନ,
ଦରିଦ୍ରେ ପ୍ରାପ୍ତି ରତନ,   ଅନ୍ଧେ ଯେନ ଚକ୍ଷୁଦାନ ।
ଯେ ବଞ୍ଛେ ମନ ପ୍ରାଣ,   ଅନ୍ଧେ ଯେନ ଚକ୍ଷୁଦାନ ।
ଧାଏଁ ଆନନ୍ଦିତ ମନ,   ଅନ୍ଧେ ଯେନ ଚକ୍ଷୁଦାନ ।

—୫୧—

ଫ—ମିଳିଲେ ଅଲାରନାଥେ   ସବ ଭକ୍ତେ ଅଗ ପିଛେ
ନୀଳାଚଳବାସୀ କେତ ଶତ,
ସକଳ କଲେ ପ୍ରଣାମ   ପ୍ରଭୁ ଦଅନ୍ତେ ଅଲିଙ୍ଗନ
ଜୟେ ଜୟେ ଧ୍ୱନି ଉଠେ ଉଚ୍ଚ ହେ ।
ଗୋପୀନାଥାଚାର୍ଯ୍ୟ ପଥେ   ନମିଲ ପ୍ରଭୁ ଅଗ୍ରତେ
କାଶୀମିଶ୍ର ସାର୍ବଭୌମ ଧାଇଁ,

ସମୁଦ୍ରେର ତୀରେ ଦୁହେଁ    ନମିଲ ପ୍ରଭୁରେ ସେହେ
ପ୍ରଭୁ ଧାଇଁ ଅଲିଙ୍ଗନ ଦେଇ ହେ ।

ଅ—ଶୋକେ ସାର୍ବଭୌମ ବୋଲେ,
ଅନନ୍ଦ ଗଦ୍ଗଦ ସ୍ୱରେ,    ଶୋକେ ସାର୍ବଭୌମ ବୋଲିଲେ ।
ପ୍ରଭୁ କୃପା ଅଛେ ମୋରେ, ଶୋକେ ସାର୍ବଭୌମ ବୋଲେ ।
ଦଅ ଚରନ୍ ସେବା ମୋରେ, ଶୋକେ ସାର୍ବଭୌମ ବୋଲେ ।

—୫୨—

ଝୁ—ପ୍ରଭୁରେ ପାଛୋଟି ନେଇ    ଜଗନ୍ନାଥ ଦର୍ଶନେ ଯାଇ
ପୂଜାର ମାଲ ପ୍ରସାଦ ଦଇ ହେ,
ସାର୍ବଭୌମ ନିଜ ପୁରେ    ପ୍ରଭୁରେ ନିମନ୍ତ୍ରଣ କରେ
ମହାପ୍ରସାଦ ନେଇ ଭୁଞ୍ଜାଇଲ ହେ ।
ପ୍ରଭୁର ଅଧରାମୃତ ସବେ    ପାଇଁୟା ଅନନ୍ଦ ସ୍ୱବେ
ପ୍ରଭୁକେ ନେଇ ଶଯ୍ୟାତେ ଶୁଅୟେ ହେ,
ସାର୍ବଭୌମ ନିଜ କରେ    ପାଦ ମର୍ଦ୍ଦାଏ ଧୀରେ
ତୀର୍ଥ ଯାତ୍ରା ବାର୍ତ୍ତା ପ୍ରଭୁ କହେ ହେ ।

ଅ—ଶୁନ ଅନନ୍ଦ ସକଲେ,
ରାମାନନ୍ଦ ବାର୍ତ୍ତା ପରେ, ଶୁନ ଅନନ୍ଦ ସକଲେ ।
ଅସିଛେ ରାୟେ ନୀଳଚଲେ, ଶୁନ ଅନନ୍ଦ ସକଲେ ।

—୫୩—

ପଦ—  ଯେଇଭାବେ ନିଶି ପାଇଲ    ପ୍ରାତଃ ମଧ୍ୟାହ୍ନ ସାରିଲ
ପ୍ରବେଶିୟାଁ ସବ ଭକ୍ତଗନ ହେ
ଅନନ୍ଦତେ ପ୍ରଭୁ ପୁନ    ସଙ୍ଗେ ଲଇ ସାର୍ବଭୌମ
ଜଗନ୍ନାଥେ କରିୟାଁ ଦର୍ଶନ ହେ ।

କାଶୀ ମିଶ୍ରେର ମନ୍ଦିରେ ସବ ଭକ୍ତ ସନେ ମିଲେ
ନିତ୍ୟାନନ୍ଦାଦି କତ ଶତ ଜନ ହେ,
ରାଧାକାନ୍ତ ଦେଖି ହୃଷ୍ଟ ପ୍ରଭୁ ହୃଏ ଭାବାବେଶ
ସବେ ମିଳି ବସିଲ ସେଖାନ ହେ ।
ସାର୍ବଭୌମ ଯୋଡ଼ କରି କହେ ପ୍ରଭୁର ଗୋଚର
ଯେଥା ଥାକି କହେ କାଶୀ ମିଶ୍ର ହେ,
ପ୍ରଭୁ କହେ ଏଇ ଦେହ ତୁମା ସବାର ନିଶ୍ଚୟ
ଯେଇ କହ କରିବ୍ୟ ଅବଶ୍ୟ ହେ ।
ଅ— ତୁମି ମୋର ବନ୍ଧୁ ସବ,
ଯେଇଭାବେ ସବେ ଯେ ଥାକ ଥାକ, ତୁମି ମୋର ବନ୍ଧୁ ସବ ।
ତୁମା ସଙ୍ଗେ କୃଷ୍ଣ ପ୍ରେମ ଲାଭ, ତୁମି ମୋର ବନ୍ଧୁ ସବ ।
—୫୪—
ଝୁ— କାଶୀ ମିଶ୍ରେର ସଦନେ ଯେଇ ଗମ୍ଭୀରା ନିଜନେ
ପ୍ରଭୁ ତାହାଁ କରେନ ଅବାସ ହେ
ଭକ୍ତଗନ ସଙ୍ଗ କରି ତାହାଁ ବଲେ ଗୌରହରି
ସେବା ମାଗେ ଭକ୍ତ ଚରନଦାସ ହେ ।
ଅ— କବେ ଦୟା ହବେ,
ଚରନେ ଶରନ ପାବେ, କବେ ଦୟା ହବେ ।
ଦୀନ ଅକିଞ୍ଚନେ କବେ, ଦୟା ହବେ ।
ଅର କିଛୁ ଗୃହିନା,
ଓ ରାଙ୍ଗାଚରନ ବିନା, ଅର କିଛୁ ଗୃହିନା ।
ଜୀବନେ ମରନେ ଅମା, ଅର କିଛୁ ଗୃହିନା ।
—୫୫—
ଇତି ସପ୍ତମ ଭାଗ ସମାପ୍ତ



# ଅଷ୍ଟମ ଭାଗ

## କାଲା କୃଷ୍ଣ ଦାସର ନବଦ୍ୱୀପେ ଗମନ

ଶୋକ—ତଂ ବନ୍ଦେ ଗୌରଜଳଦଂ ସ୍ୱସ୍ୟ ଯୋଦର୍ଶନାମୃତୈଃ
ବିଚ୍ଛେଦାବ ଗ୍ରହମାନ ଭକ୍ତ ଶସ୍ୟାନ୍ୟ ଜୀବୟତ୍ ।

ଅ— ଯେମନି ଥାକଲ ପ୍ରଭୁ ନୀଳାଚଲ ବାସେ
କତ ନୀଳାଚଲବାସୀ ଭକ୍ତ ମିଲେ ପାଶେ ହେ ।
ପ୍ରଭୁରେ ଜାନାୟେ ନିତ୍ୟାନନ୍ଦ ଦାମୋଦର
ଗୌଡ଼ଦେଶେ ବାର୍ତ୍ତା ପାବ କରନ୍ତ ବଗୃର ହେ ।
ମାୟୁରେ କହବ ଯାଇଁ ତୁମାର ଆଗମନ
ଅଦ୍ୱୈତ ଶ୍ରୀନିବାସାଦ ଯତ ଭକ୍ତଗନ ହେ ।

ଅ— ଯେଉ ଦୟା କର,
ଓହେ ଦୟାଲ ଠାକୁର, ଯେଉ ଦୟା କର ।
ନବଦ୍ୱୀପେ ଯାବ ଗୃର, ଯେଉ ଦୟା କର ।

—୧—

ପ— ସକଲେ ଆସିବେ ଶୁନି ତୁମାର ଗମନ
ଦଅ ଆଜ୍ଞା ପ୍ରଭୁ ଆମାର ଯେନ ନିବେଦନ ହେ ।
କାଲ୍ କୃଷ୍ଣ ଦାସେ ଦବ ଗୌଡ଼େ ପାଠାଇୟାଁ
ଅତବୋଲ୍ ତାରେ ଜାଙ୍କେ ଆଶ୍ୱାସ କରିୟାଁ ହେ ।
ଶୁନି ପ୍ରଭୁ କୃଷ୍ଣଦାସେ ଗୌଡ଼େ ବଦା କଇଲ
ଅଦ୍ୱୈତାଦ ଦଗେ ବହୁ ପ୍ରସାଦ ପାଠାଇଲ ହେ ।
ଦେଖି ଆନନ୍ଦତ ହୈଲ୍ଲ ଶଚୀ ମାତାର ମନ,
ଶ୍ରୀବାସାଦ ଆର ଯତ ଅଦ୍ୱୈତାଦ ଗନ ହେ ।

ଅ— କହନା ନା ଯାଏ,
ସେକାଲି ଅନନ୍ଦ ତାହେ, କହନା ନା ଯାଏ ।
ଅନ୍ଧ ଯେନ୍ ଚକ୍ଷୁ ପାଏ, କହନା ନା ଯାଏ ।

—୨—

## ପ୍ରତାପରୁଦ୍ରଦେବଙ୍କ ଦର୍ଶନ ଇଚ୍ଛା

### ଏକାଳେ ନୀଳାଚଳେ କି ?

ପଦ— ଏକଦିନେ ସାର୍ବଭୌମ କହେ ପ୍ରଭୁସ୍ଥାନ
ଅଭୟ ବର ଦେୟ ପ୍ରଭୁ କର ନିବେଦନ ହେ ।
ପ୍ରଭୁ କହେ କହ ତୁମି କାହିଁ କରୁ ଭୟ
ଯୋଗ୍ୟ ହଇଲେ କହିବ, ଅଯୋଗ୍ୟ ହଇଲେ ନୟ ।
ସାର୍ବଭୌମ କହେ ଯେଇ ପ୍ରତାପରୁଦ୍ର ରାୟେ
ଉତ୍କଣ୍ଠା ହୋଇୟାଁ ରାଜା ମିଳିବାରେ ଚାହେଁ ହେ ।
କର୍ଣ୍ଣେ ହସ୍ତ ଦେଇ ପ୍ରଭୁ ସ୍ମରେ ନାରାୟଣ
ସ୍ତ୍ରୀ ଦର୍ଶନର ସମ ବିଷର ଭକ୍ଷଣ ହେ ।

ଶ୍ଳୋକ—ନିଷ୍କିଞ୍ଚନସ୍ୟ ଭଗବଦ୍ ଭଜନୋନ୍ମୁଖସ୍ୟ
ପାରଂପରଂ ଦଗ ମିସୋଭବ ସାଗରେସ୍ୟ ।
ସନ୍ଦର୍ଶନଂ ବିଷୟିଣା ମଥଯୋଷିତାଞ୍ଚ
ହା ହନ୍ତହନ୍ତ ବିଷଭକ୍ଷଣ ତୋପ୍ୟସାଧୁଃ ।

ପ— ସାର୍ବଭୌମ କହେ ସତ୍ୟ ତୁମାର ବଚନ,
ଜଗନ୍ନାଥ ସେବକ ରାଜା ମହାଭକ୍ତୋତ୍ତମ ହେ ।

ଅ— ଯେକବାର ପ୍ରଭୁ କର ଦୟେ,
ରାଜା ଦରଶନେ ଚାହେ, ଯେକବାର ପ୍ରଭୁ କର ଦୟେ ।
ବାରଂବାର ନାସ୍ତି କହେ, ଯେକବାର ପ୍ରଭୁ କର ଦୟେ ।

—[illegible]—

ପ— ସେଇବାତ ପୁନରପି ମୁଖେ ନା ଆନବେ,
କହ ଯଦ ପୁନର୍ବାର ଏଥା ନା ଦଖିବେ ହେ ।
ଭଯ୍ୟ ପାଇ ସାର୍ବଭୌମ ନିଜ ପୁରେ ଗେଲ,
ହେନକାଲେ ପ୍ରତାପରୁଦ୍ର ପୁରୁଷୋତ୍ତମେ ଅଇଲ ।
ରାମାନନ୍ଦ ରାୟେ ଅଯେ ଗଜପତି ସଙ୍ଗେ,
ପ୍ରଥମେ ପ୍ରଭୁରେ ଅସି ମିଲେ ବନଯୁଷ୍ଟେ ହେ ।
ରାଯ୍ଯ ପ୍ରନମିତ କୈଲ ପ୍ରଭୁ ଅଲିଙ୍ଗନ,
ଦୁଇଜନ ପ୍ରେମାବେଶେ କରଲ କ୍ରନ୍ଦନ ହେ ।

ଅ— ଆନନ୍ଦେର ସୀମା ନୟେ,
ପୁର୍ବାପୂର୍ବ ସ୍ୱବୋଦୟେ, ଆନନ୍ଦେର ସୀମା ନୟେ ।
ସର୍ବେ ଚମତ୍କାରେ ଗୃଦ୍ଧେଁ, ଆନନ୍ଦେର ସୀମା ନୟେ ।

—୪—

ପଦ— ଯେତେନେ ରହ ରାଜା ସାର୍ବଭୌମେ ଡକାଇଲ,
ନମସ୍କାର କର ରାଜା ତାହାରେ ପୁଛିଲ ହେ ।
ମୋର ଲାଗି ପ୍ରଭୁ ପଦେ କୈଲ ନିବେଦନ,
ସାର୍ବଭୌମ କହେ କରଲ୍ଁ ଅନେକ ଯତନ ହେ ।
କହେ କଦାପି ନା କର ରାଜା ଦରଶନ,
ଯେବେ ଆଉ୍ ଯାବ ପଦ କହ ମୋରେ ପୁନ ହେ ।
ଶୁନଯ୍ଯାଁ ରାଜାର ମନେ ଦୁଃଖ ଉପୁଜିଲ,
ବନଯ୍ଯ କରଯ୍ଯାଁ କିଛୁ କହିତେ ଲାଗିଲ ହେ ।
୨ ଜଗତ ତାରିବା ହେତେ ଚୈତନ୍ୟାବତାର,
ପ୍ରତାପରୁଦ୍ରେ ଛାଡ଼ି କରିବେ ଜଗତ ନିସ୍ତାର ହେ ।
ତାହାର ପ୍ରତିଜ୍ଞା ମୋରେ ନ ଦେବେ ଦର୍ଶନ,
ମୋ ପ୍ରତିଜ୍ଞା ତାରବନେ ତେଜିବ ଜୀବନ ହେ ।

ଯଦି ମହାପ୍ରଭୁଙ୍କର ନ ପାଇଲି କୃପାଧନ,
କିବା ରାଜା କିବା ଦେହ ସବୁ ଅକାରଣ ହେ ।
ଅ— ମୋ ଦେହେ କି ପ୍ରୟୋଜନ,
ପ୍ରଭୁଙ୍କର ଦର୍ଶନେ ଅଯୋଗ୍ୟ ଯେଣ, ଏ ଦେହେ କି ପ୍ରୟୋଜନ ।
କହେ ମହାରାଜା ନେତ୍ର ଥନ ଥନ, ଏ ଦେହେ କି ପ୍ରୟୋଜନ ।
କର୍ଦ୍ଦିୟା ହଇଲ ଯଦି ଶ୍ରୀ ଚୈତନ୍ୟ, ଏ ଦେହେ କି ପ୍ରୟୋଜନ ।

—୪—

ପ— ସ୍ନାନ ଯାତ୍ରା କବେ ହବେ ରାଜା ପୁଚ୍ଛିଲେ,
ଅଗ୍ରେଙ୍କ କହେ ଛଳନଦନ ଅଛଏ ଅଗରେ ହେ ।
ରାଜା କହେ ତୁମି ଅମା ପାଶେ ଦାଣ୍ଡାଇବେ,
ଭକ୍ତଚରଣ ବୋଲେ ତୁମା କୃପାତେ ଶକ୍ତିବେ ହେ ।
ଅ— ମୋଇ ଦୟା କର ମୋରେ,
ସାର୍ବଭୌମେ ରାଜା ବୋଲେ, ମୋଇ ଦୟା କର ମୋରେ ।
ପ୍ରଭୁ କୃପା ଯେଣ କରେ, ମୋଇ ଦୟା କର ମୋରେ ।
କହି ନେତ୍ର ଅଶ୍ରୁ ଝରେ, ମୋଇ ଦୟା କର ମୋରେ ।

—୨—

ଶ୍ଳୋକ—ଅତ୍ୟଦଣ୍ଡଂ ତାଣ୍ଡବ ଗୌରଚନ୍ଦ୍ରଃ
କୁର୍ବନ୍ ଭକ୍ତୌ ଶ୍ରୀ ଜଗନ୍ନାଥ ଗେହେ ।
ନାନାଭାବାଳଂକୃତାଙ୍ଗ ସ୍ୱଧନ୍ୟା
ଚକ୍ରେ ପ୍ରେମବନ୍ୟା ଜମଗ୍ନଂ ।
ଅ— ସ୍ନାନ ଯାତ୍ରା ହେଇ ପ୍ରଭୁ ଗୌରହରି
ଅଣସରେ ଜଗନ୍ନାଥ ହେ,
ଅଲାଳନାଥେ ଯାଇ କତଦିନେ ରହି
ମୋକାଳେ ମିଳେ ଉଦନ୍ତ ହେ ।

ନବଦ୍ୱୀପବାସୀ ନୀଳାଚଳେ ଆସି
କେତେ ଶତ ପ୍ରବେଶିଣ ହେ,
କରନ୍ତ ଶ୍ରବଣ ଗୌର ଭକ୍ତଗଣ
ଭକ୍ତସଙ୍ଗ ସଙ୍କୀର୍ତ୍ତନ ହେ ।

ପ୍ରଭୁ ଶୁନି ଅଚଳ ସକଳେ ଭେଟିଲ
କରେ ଉଚ୍ଚେ ଜୟଧ୍ୱନି ହେ,
ବାଦ୍ୟେ ଖୋଲତାଳ ପ୍ରେମତେ ବିହ୍ୱଳ
ଢୁଲି ଢୁଲି କମ୍ପେ ମେଦିନୀ ହେ ।

ଅ— କହନା ନା ଯାଏ,
ସେକାଳ ଆନନ୍ଦ ତାଦ୍ୟେ, କହନା ନା ଯାଏ ।
କେହ ଗାଏ କେହ ବାଏ, କହନା ନା ଯାଏ ।
କେହ ଧୂଳି ଗଡ଼ଯାଏ, କହନା ନା ଯାଏ ।

—୭—

## ବେଢ଼ା କୀର୍ତ୍ତନ ଓ ପ୍ରତାପରୁଦ୍ରଦେବଙ୍କ ଦର୍ଶନ

୯— ବେଢ଼ା ପରିକ୍ରମ କରନ୍ତି କୀର୍ତ୍ତନ
ଚୌଦଗେ ଭକ୍ତସମାଜ ହେ,
ଗୃର ସମ୍ପ୍ରଦାରେ ନୃତ୍ୟ ସ୍ୱରଠାରେ
ଅଷ୍ଟମ ମୃଦଙ୍ଗ ବାଜେ ହେ ।
ବତିଶ କରତାଳ ଚତୁର୍ଦ୍ଦିଗ ହୈଲ
ଅଗେ ନାଚେ ନିତ୍ୟାନନ୍ଦ ହେ
ମଧ୍ୟ ସମ୍ପ୍ରଦାରେ ନାଚେ ପ୍ରଭୁ ତାରେ
ଘେନି ସଙ୍ଗେ ରାମାନନ୍ଦ ହେ ।

ଅ— ବାଜିଲ ରେ ବାଜିଲ,
ସ୍ଫେବ ତାଳେ ଝାଞ୍ଜଖୋଲ, ବାଜିଲ ରେ ବାଜିଲ ।
ଉଠେ ଦେଇ ହରିବୋଲ, ବାଜିଲ ରେ ବାଜିଲ ।
ଉଛୁଳିଲ ନୀଳାଚଳ, ବାଜିଲ ରେ ବାଜିଲ ।

—୮—,

ଅ— ଏଇ ସମ୍ପ୍ରଦାରେ ଅଦ୍ୱୈତ ବହୁରେ
ପିଠେ ନାଚେ ହରିଦାସ ହେ,
ଉଚ୍ଚେ ନାମ ଗାୟେ ଭୁବନ କମ୍ପାୟେ
ଭାବରେ ହୟେ ଉଲ୍ଲାସ ହେ,
ନୀଳାଚଳବାସୀ ସର୍ବେ ମିଳେ ଆସି
ଦେଖେ ଅପୂର୍ବ ବିଧାନ ହେ,
ନାହିଁକି ମାନତ ସ୍ତ୍ରୀ ବାଳକ ଯତ
ସର୍ବେ ନାଚେ ସଙ୍କୀର୍ତ୍ତନ ହେ ।

ଅ— ଉଠିଲ ଅନନ୍ଦ,
ମିଳି ସର୍ବ ଭକ୍ତବୃନ୍ଦ, ଉଠିଲ ଅନନ୍ଦ ।
ଉଠେ ଜୟଧ୍ୱନି ଶବ୍ଦ, ଉଠିଲ ଅନନ୍ଦ ।

—୯—

ଝୁ— ଅଟାଳତେ ଦେଖେ ମନେ ବହୁ ଦୁଃଖେ
ପ୍ରତାପରୁଦ୍ର ରାଜନ ହେ
ସେନ ସାର୍ବଭୌମ କରେ ନିରୀକ୍ଷଣ
ଅଶ୍ରୁ ପୂରିତ ନୟାନ ହେ ।
ପୁଛ ଅଗ୍ରଫିରେ ଦେଖାଏ ପ୍ରଭୁରେ
କରେ କୋଟି ପ୍ରଣମିତ ହେ

କୀର୍ତ୍ତନ ନର୍ତ୍ତନ    ଦେଖି ହୁଅନ୍ତେ ଜନ
ଭକ୍ତ ଚରନ ଯୋଡ଼େ ହାତ ହେ ।

ଅ—   ଏ ତ ଅପୂର୍ବ ବିଧାନ,
ସାର୍ବଭୌମେ କହେ ଉତ୍କଳ ରାଜନ, ଏ ତ ଅପୂର୍ବ ବିଧାନ ।
ସାର୍ଥ ହେଲ ପ୍ରାନ ଦେଖିୟାଁ ନୟାନ, ଏ ତ ଅପୂର୍ବ ବିଧାନ ।

—୧୦—

ଲ—   କୀର୍ତ୍ତନ ଦେଖିୟାଁ ରାଜା ହୁଅନ୍ତେ ଚମତ୍କାର
ଅଜ ଜନ୍ମ ସାର୍ଥ ହେଲ ସ୍ୱାର୍ଥ ନୀଳଚଲ ।
କଭୁ ଦେଖିନାହିଁ ଏଭ ମାଧୁର କୀର୍ତ୍ତନ
ଅଲଭ ପ୍ରେମ ଅଲଭ ନୃତ୍ୟ ଅଲଭ ସ୍ୱରେ ଗାନ ।
ଭଟ୍ଟାଗୃଣୀ କହେ ଏଭ ଯୁଗେର ସ୍ୱଧର୍ମ,
ଚୈତନ୍ୟ ସୃଷ୍ଟିତେ ହୁଏ ପ୍ରେମ ସଙ୍କୀର୍ତ୍ତନ ।

ଶ୍ଳୋକ—ଧନ୍ୟ କଳି ପ୍ରବେଶଞ୍ଚ ଧନ୍ୟ ନବଦ୍ୱୀପ ମଣ୍ଡ
ଧନ୍ୟ ମାତା ଶଚୀଦେବୀ ଚୈତନ୍ୟ ଗୃହେ ଜନ୍ମନ ।

ଲ—   ଧନ୍ୟ କଳି ହେଇତେ ଏଭ ଧର୍ମ ପ୍ରଗୃରଣ
କଳିକାଲ ଧର୍ମ କୃଷ୍ଣନାମ ସଙ୍କୀର୍ତ୍ତନ ।

ଶୋକ—କୃଷ୍ଣବର୍ଣ୍ଣେତ ସା କୃଷ୍ଣସାଙ୍ଗୋପାଙ୍ଗୋସ୍ତ୍ର ପାର୍ଷଦଂ
ଯଜ୍ଞୈ ସଙ୍କୀର୍ତ୍ତନେ ପ୍ରାୟୈ ଯଜନ୍ତିହସୁମେଧସଃ ।

ପଦ—  ସଙ୍କୀର୍ତ୍ତନ ଯଜ୍ଞେ କୃଷ୍ଣ ହୁଅନ୍ତେ ଅରାଧନ,
ହୋଇ ଅଶ୍ୱମେଧ ପାବ କଳି ହତ ଜନ ହେ ।
କଳିଯୁଗେ ନାମ ରୂପେ କୃଷ୍ଣର ଜନମ୍,
ନାମ ହେଇତେ ହୁଅନ୍ତେ ସର୍ବ ପାପ ବିମୋଚନ ହେ ।

ଅ— ଗଢ ନାହିଁ ଗଢ ନାହିଁ,
କଳିଯୁଗେ ଅନ୍ୟ କାହିଁ, ଗଢ ନାହିଁ ଗଢ ନାହିଁ ।
ହରିନାମ ବିନା କାହିଁ, ଗଢ ନାହିଁ ଗଢ ନାହିଁ ।
ରାଜା ଆଗେ ସାର୍ବଭୌମ କହୁ, ଗଢ ନାହିଁ ଗଢ ନାହିଁ ।

—୧୧—

ଶ୍ଳୋକ—କଳୌ ସଭାଜୟନ୍ତ୍ୟାର୍ଯ୍ୟାଃ ଗୁଣଜ୍ଞାଃ ସାରଭାଗିନଃ
ଯତ୍ର ସଂକୀର୍ତ୍ତନେନୈବ ସର୍ବସ୍ୱାର୍ଥୋଽଭିଲଭ୍ୟତେ ।

ଝୁ— ଯେ ପ୍ରାଣୀ ପଣ୍ଡିତ ବୋଲାଇ । ଗୁଣଜ୍ଞ ସାର ଗ୍ରାହୀ ॥
ସକଳ ଶାସ୍ତ୍ର ଅନୁମାନେ । ନିର୍ମଳ ତତ୍ତ୍ୱ ଶୁଦ୍ଧ ଜ୍ଞାନେ ॥
ବେଦ ବଚନରେ ବ୍ରହ୍ମ ଭାଗ । ସେ ବୋଲେ ଧନ୍ୟ କଳିଯୁଗ ॥
ବ୍ରାହ୍ମଣ ଆଦି ଚତୁର୍ବର୍ଣ୍ଣେ । କରିବେ ନାମ ସଂକୀର୍ତ୍ତନେ ॥
ତୁଣ୍ଡେ ଗୋବିନ୍ଦ ନାମ ଗାଇ । ପ୍ରେମ ପୁଲକ ତନୁ ବହି ॥
ନୟନୁ ବହୁ ଅଶ୍ରୁଜଳ । ଲଭିବେ କୋଟି ତୀର୍ଥ ଫଳ ॥
ଯେ ବଡ଼ ଦୁର୍ଲ୍ଲଭ ଜଗତେ । କୃଷ୍ଣଭଜନ ନାନା ମତେ ॥

ଅ— ଜନର ସ୍ୱଧର୍ମ ଏହି,
ନାମ ସଂକୀର୍ତ୍ତନ ନେଇ, କଳିର ସ୍ୱଧର୍ମ ଏହି ।
ରାଜାଆଗେ ସାର୍ବଭୌମ କହୁ, କଳିର ସ୍ୱଧର୍ମ ଏହି ।

—୧୨—

ଯେଉଁକାଳେ ଅଛ କି ?

ଅ— ପ୍ରଭୁ ଅଙ୍ଗ ଲେଇ କୀର୍ତ୍ତନ କରିଲେତ ବନ୍ଦ,
ବସାଇ ଚଳାଇ ସର୍ବେ ହଇଯାଁ । କମ୍ପବୁ ହେ ।
ପ୍ରତାପରୁଦ୍ର ରାଜା ବହୁ ପ୍ରସାଦ ପଠାଇଲ,
ଗୋପୀନାଥାଚାର୍ଯ୍ୟ କାଶୀ ମିଶ୍ର ଆଣି ଦେଇ ହେ ।

ଆପନ ଶ୍ରୀକରେ ପ୍ରଭୁ କରେ ପରିବେଷନ,
ସବାରେ ଭୁଞ୍ଜାଇ ପ୍ରଭୁ କରଏ ଭୋଜନ ହେ ।
କୀର୍ତ୍ତନିଆଁ ର ପରିଶ୍ରମ ଜାନେ ଗୌରରାୟେ,
ଭଲ ଭଲ ଦ୍ରବ୍ୟ ଅନ୍ନ ସବାରେ ଭୁଞ୍ଜାଏ ହେ ।
ଆଚମନ ସାରି ସର୍ବେ ହୟେ ମହାତୃପ୍ତ,
କମଗ୍ନେ ବସେନ ପ୍ରଭୁ ଅଦ୍ୱୈତେର ସାଥ ହେ ।
ଶଚୀମାତାର ବାର୍ତ୍ତା ପ୍ରଭୁ ପୁଛା କରେ,
ଅଦ୍ୱୈତ କହେ ମାୟେ ବହୁ ଅଛଏ ଦୁଃଖରେ ।

ଅ— ପ୍ରଭୁ କହେ ଅଦ୍ୱୈତରେ,
ତୁମି ଶାନ୍ତକର ତାରେ, ପ୍ରଭୁ କହେ ଅଦ୍ୱୈତରେ ।
ମାୟେ ଯେମନ ନା ଝୁରେ, ପ୍ରଭୁ କହେ ଅଦ୍ୱୈତରେ ।
କହୁଁ ନେହୁ ନାର ଝରେ, ପ୍ରଭୁ କହେ ଅଦ୍ୱୈତରେ ।

—୧୩—

ଶ୍ଳୋକ—ଶ୍ରୀଗୁଣ୍ଡିଚାମନ୍ଦିରମାତ୍ମବୃନ୍ଦୈ ।
ସମ୍ମାର୍ଜୟନ୍ କ୍ଷାଳନତଃ ସ ଗୌରଃ ।
ସ୍ୱଚିତ୍ତ ବାଚ୍ଛତଲମୁଜ୍ଜ୍ୱଲଞ୍ଚ ।
କୃଷ୍ଣୋପଦେଶୀ ପଯ୍ୟୈବଂଚକାର ।

ପଦ— ଯେହନ ସମୟେ କଣୀ ହଇଲେକ ଶେଷ,
ହେଲ ଗୁଣ୍ଡିଚାନବର ମାର୍ଜନ ଦିବସ ହେ ।
ଭକ୍ତଗନ ଲଇ ପ୍ରଭୁ କରେ ସମ୍ମାର୍ଜନ
ଲୋକେ ଶିଖାଇତେ ଦେଖ କରେନ ଆପନ ହେ ।
ପାଷଣ୍ଡଦଲନ ବାନା ପ୍ରଭୁ ଶ୍ରୀଚୈତନ୍ୟ
ଭଗତଚରନ ଗୀତ କରୟେ ସ୍ତବନ ହେ ।

ଅ— ଜଗତେର ଶିକ୍ଷାଲଗି,
ଗୋଲୋକ ବଲ୍ଲଭ ତେଜି, ଜଗତେର ଶିକ୍ଷା ଲଗି ।
ଆପନ ହୈଲ ବୈରାଗୀ, ଜଗତେର ଶିକ୍ଷା ଲଗି ।
ବୁଲେ ପ୍ରେମଭିକ୍ଷା ମାଗି, ଜଗତେର ଶିକ୍ଷା ଲଗି ।

—୧୪—

## ରଥଯାତ୍ରା ନର୍ତ୍ତନ

ଶ୍ଳୋକ—ସଙ୍କୀର୍ତ୍ତ୍ୟୋତ୍ କୃଷ୍ଣ ଚୈତନ୍ୟଂ ଶ୍ରୀରଥାଗ୍ରେନ ନର୍ତ୍ତି ଯଃ
ଯେନାସୀତ୍ତ୍ଜଗତାଂ ଚିତ୍ରଂ ଜଗନ୍ନାଥୋଽପି ବିସ୍ମିତଂ ।

ଅ— ସର୍ବ ଭକ୍ତଗଣ କରହ ଶ୍ରବଣ
ରଥଯାତ୍ରା ସଙ୍କୀର୍ତ୍ତନ ହେ,
ଯେନ ଭକ୍ତ ସୈନ୍ୟ ଆପେ ଶ୍ରୀ ଚୈତନ୍ୟ
ନୃତ୍ୟ ପରମ ମୋହନ ହେ ।
ପୂର୍ବଦନ୍ତୁ ଆସି ନବଦ୍ୱୀପ ବାସୀ
ଆର ଛନ ସମ୍ପ୍ରଦାୟ ହେ
ମିଳୟାଂ ପ୍ରଭୁରେ ଗଦ୍‌ଗଦ ଅନ୍ତରେ
ସବେ ମିଲି ନାଚେ ଗାୟ ହେ ।

ଅ— ପ୍ରଭୁର ଦର୍ଶନେ,
ମିଲେ ଆନନ୍ଦିତ ମନେ, ପ୍ରଭୁର ଦର୍ଶନେ ।
ସର୍ବେ ପ୍ରବୀନ ଖାତିନେ, ପ୍ରଭୁର ଦର୍ଶନେ ।

—୧୫—

ଧୁ— ଶ୍ରୀଗୁଣ୍ଡିଚା ଦିନ ପ୍ରଭୁ ପ୍ରାତ ସ୍ନାନ
ଭକ୍ତଗୋଷ୍ଠି ସଙ୍ଗେ ଲଇ ହେ,
ପଦର୍ଶି ବଜଇ ଜଗନ୍ନାଥ ହୋଇ
ଦର୍ଶନ କରନ୍ତ ଯାଇ ହେ ।

ବଳଭଦ୍ରାଦ ସାଥ          ସେନ ଜଗନ୍ନାଥ
ଛନରଥେ ଛନ ମୂର୍ତ୍ତି ହେ,
ଭଗତ ଚରଣ          କରନ୍ତେ ଦର୍ଶନ
ପାଦପଦ୍ମ ନଖ ଚନ୍ଦ୍ର ହେ ।

ଅ— ନାଚ ଏ ଭୁବନ,
ଦଅ ଚରନ ଦର୍ଶନ,     ନିଚ ଏ ଭୁବନ ।
ନାମ ଗାଇ ଯାଉ ଜୀବନ,   ନିଚ ଏ ଭୁବନ ।

—୧୬—

ଅ— ରଥେ ଚଢ଼ି ଜଗନ୍ନାଥ କରିଲ ଗମନ
ତବେ ମହାପ୍ରଭୁ ସଙ୍ଗେ ଲଇ ଭକ୍ତଗନ ହେ,
ଖଣ୍ଡିକିଅଁ ଗନେ ଦିଲ ମାଲ ଶ୍ରୀଚନ୍ଦନ
ଦୁଇ ଦୁଇ ମୃଦଙ୍ଗ ବୈଲ ଅଷ୍ଟଜନ ହେ ।
ତବେ ମହାପ୍ରଭୁ ମନେ ବିଚାର କରିଯାଁ
ଚାରି ସମ୍ପ୍ରଦାୟ ଦଲ ଗାୟନ ବାଣ୍ଟିଅ ହେ ।
ନିତ୍ୟାନନ୍ଦ ଅଦ୍ୱୈତ ହରିଦାସ ବକ୍ରେଶ୍ୱରେ
ଚାରିଜନେ ଅଣ୍ଡ ଦଲ ନୃତ୍ୟ କରିବାରେ ହେ ।

ଅ— ଶ୍ରୀଜନ୍ନାଥେର ଅଗେ,
ନାଚେ ଗାୟେ ପ୍ରେମୋନ୍ମାଦେ,   ଶ୍ରୀଜଗନ୍ନାଥେର ଅଗେ ।
ଉଠଏ କୀର୍ତ୍ତନ ରଙ୍ଗେ,      ଶ୍ରୀଜଗନ୍ନାଥେର ଅଗେ ।

—୧୭—

ଲ— କୁଲିନ ଗ୍ରାମେ ଏକ କୀର୍ତ୍ତିନଅଁ ସମାଜ
ତାହାଁ ନୃତ୍ୟ କରେ ରାମଦାସ ସତ୍ୟରାଜ ।
ଶାନ୍ତିପୁରେ ଅଦ୍ୱୈତେର ଅର ସମ୍ପ୍ରଦାୟେ,
ଅଚ୍ୟୁତାନନ୍ଦ ନାଚେ ଅର ସବେ ଗାୟେ ।

ଖଣ୍ଡବାସୀ ଜନ କରେ ଅତ୍ୟନ୍ତ କୀର୍ତ୍ତନ,
ନରହରି ନାଚେ ତାହେ ଶ୍ରୀ ରଘୁନନ୍ଦନ ।
ଅ— ଉଠାଇଲ ହରି ଧ୍ୱନି,
ଦୁଲ୍ ଦୁଲ୍ କମ୍ପେ ମେଦନୀ, ଉଠାଇଲ ହରି ଧ୍ୱନି

—୧୮—

ଘ— ଜଗନ୍ନାଥ ଗୃହପାଶେ ସବେ ନାଚେ ଗାୟେ
ଦୁଇ ପାଶେ ଦୁଇ ଦଳ ପିଛେ ସମ୍ପ୍ରଦାୟେ ହେ ।
ସାତ ସମ୍ପ୍ରଦାରେ ବାଜେ ଚଉଦ ବାଦଲ
ଯାର ଧ୍ୱନି ଶୁନି ହୟ ବୈଷ୍ଣବ ପାଗଲ ହେ ।
ସାତଠାଇଁ ବୁଲେ ପ୍ରଭୁ ହରି ହରି ବୋଲ
ଜୟ ଜଗନ୍ନାଥ ବୋଲେ ହସ୍ତଯୁଗ ତୁଲ ହେ ।
ଆର ଏକ ଶକ୍ତି ପ୍ରଭୁ କରିଲ ପ୍ରକାଶ
ଏକକାଳେ ସାତଠାଇଁ କଲେନ୍ ବିଳାସ ହେ ।
କେହ ଲେଖିତେ ନା ପାରେ ଅଚିନ୍ତ୍ୟେ ଶକ୍ତି
ଅନ୍ତରଙ୍ଗ ଭକ୍ତ ଜାନେ ଯାର ଶୁଦ୍ଧ ଭକ୍ତି ହେ ।
ଅ— କେ ବର୍ଣ୍ଣିବ,
ପ୍ରଭୁର ଅଚିନ୍ତ୍ୟ ଭାବ, କେ ବର୍ଣ୍ଣିବ ।
ବ୍ରହ୍ମା ଶିବରେ ଦୁର୍ଲ୍ଲଭ, କେ ବର୍ଣ୍ଣିବ ।

—୧୯—

ଝୁ— କୀର୍ତ୍ତନ ଦେଖେ ସର୍ବେ ରଥ କରୟାଁ ସ୍ଥଗିତ
କେହ ନାଚେ କେହ ଗାୟେ କେହ ସ୍ତମ୍ଭୀଭୂତ ହେ ।
ପ୍ରତାପରୁଦ୍ର ରଜା ହୟେ ପରମ ବିସ୍ମୟେ
ଦେଖିତେ ଶରୀର ହୈଲ ମହାପ୍ରେମମୟେ ହେ ।

ସାର୍ବଭୌମ ସନେ ରାଜା କରେ ଠାଉରା
ଅର ଭେଦ ନ ଜାନୟେ ଚୈତନ୍ୟ ଗୃହସ୍ଥ ହେ ।
ରାଜାର ନିଷ୍ଠା ସେବା ଦେଖି ପ୍ରଭୁର ତୁଷ୍ଟ ମନ
ସାକ୍ଷାତେ ନ ହୟେ ଦେଖା ପରସ୍ପରେ ମିଲନ ହେ ।

ଅ— ଦୟାମୟ ଗୌର ହରି,
ଭକ୍ତହେତେ ଅବତରି, ଦୟାମୟ ଗୌର ହରି ।
ନାମ ଲଖୟେ ଲୋକ ତାରି, ଦୟାମୟ ଗୌର ହରି ।
ନୀଳାଚଳେ ଖେଳା କରି, ଦୟାମୟ ଗୌର ହରି ।

—୨୦—

ପ— ପ୍ରେମମତ୍ତ ସାତ୍ତ୍ୱିକ କରନ୍ତି କୀର୍ତ୍ତନ
ଅପନି ଉଦ୍‌ବେଗେ ନାଚୁଇଲ ଭକ୍ତଗଣ ହେ ।
ଅପନ ନାଚତେ ଯବେ ପ୍ରଭୁର ମନ ହୈଲ
ସାତ ସମ୍ପ୍ରଦାୟ ଅଣି ଏକତ୍ର କରିଲ ହେ ।
ଦଣ୍ଡବତ କରେ ପ୍ରଭୁ ତୁଲି ଦୁଇ ହାତ
ଊର୍ଦ୍ଧ୍ୱମୁଖେ ସ୍ତୁତି କରେ ଦେଖି ଜଗନ୍ନାଥ ହେ ।

ଅ— ଜୟ ଜୟ ଜଗନ୍ନାଥ,
ଗାୟେ ପ୍ରଭୁ ଟେକି ହାତ, ଜୟ ଜୟ ଜଗନ୍ନାଥ ।
ବଲଭଦ୍ର ସୁଭଦ୍ରା ସାଥ, ଜୟ ଜୟ ଜଗନ୍ନାଥ ।

—୨୧—

ଶ୍ଳୋକ—ନମୋ ବ୍ରହ୍ମଣ୍ୟ ଦେବାୟ ଗୋ ବ୍ରାହ୍ମଣ ହିତାୟଚ
ଜଗଦ୍ଧିତାୟ କୃଷ୍ଣାୟ ଗୋବିନ୍ଦାୟ ନମୋନମଃ ।
ଜୟ ତ୍ୱ ଜୟ ତ୍ୱ ଦେବୋ, ଦେବକୀନନ୍ଦନସ୍ୟୌ
ଜୟ ତ୍ୱ ଜୟ ତ୍ୱ କୃଷ୍ଣୋ ବୃଷ୍ଣି ବଂଶ ପ୍ରଦୀପଃ ।

ଜୟ ତୁ ଜୟ ତୁ ମେଘ ଶ୍ୟାମଳଃ କୋମଳାଙ୍ଗୋ
ଜୟ ତୁ ଜୟ ତୁ ପୃଥ୍ୱୀ ଭାରନାଶ ମୁକୁନ୍ଦଃ ।

ଅ— ଏ ଶ୍ଳୋକ ପଢ଼ିଣ୍ଡୁଁ । ପ୍ରଭୁ କରନ୍ତେ ପ୍ରଣାମ ।
ଯୋଡ଼ ହସ୍ତେ ଭକ୍ତ ସବ ବନ୍ଦେ ଭଗବାନ ହେ ।
ଉଦଣ୍ଡ ନୃତ୍ୟେ ପ୍ରଭୁ କରନ୍ତି । ହୁଙ୍କାର
ଚକ୍ର ପ୍ରାୟେ ଭ୍ରମେ ପ୍ରଭୁ ହଇଣ୍ଡୁଁ । ଅସ୍ଥିର ହେ ।
ଉଦଣ୍ଡ ନୃତ୍ୟ ପ୍ରଭୁର ଅଦ୍ଭୁତ ବିକାର
ଅଷ୍ଟମ ସାତ୍ତ୍ୱିକ ଭାବ ଉଦୟ ଶରୀର ହେ ।
ଶିମୂଳୀର ବୃକ୍ଷ ଯେନ କଣ୍ଟକ ବେଷ୍ଟିତ
ମାଂସ ସବ ବ୍ରଣ ପର ରୋମ ପୁଲକିତ ହେ ।
ଜଳଚକ୍ର ଧାରା ଯେନ ବହେ ଅଶ୍ରୁଧାର
ଅସ ପାଶ ଲୋକ ଯତ ଭିଜଇ ସକଲ ହେ ।
ତାଣ୍ଡବ ନୃତ୍ୟ ଛାଡ଼ୟୁଁ । ସ୍ୱରୂପେ ଆଜ୍ଞା ଦଲ
ହୃଦୟ ଜାନି ସ୍ୱରୂପ ଗାଇତେ ଲଗିଲ ହେ ।

ଅ— ପ୍ରଭୁ ଭାବରେ ଗଦ୍ଗଦ, ଗାଏ ସ୍ୱରୂପ ପୂର୍ବପଦ ।
ହରି ବୋଲେ ଭକ୍ତ ସବ, ପ୍ରଭୁ ଭାବରେ ଗଦ୍ଗଦ ।

—୨୨—

ପଦ— ସେଇ ତ ପରାଣନାଥ ପାଇଲୁଁ ପାଇଲୁଁ
ଯାହା ହଇତେ ମଦନ ଦହନେ ଦଗ୍ଧ ହୈଲୁଁ ହେ ।
ସେଇ ଜୁହା ଉଚ୍ଚସ୍ୱରେ ଗାୟେ ଦାମୋଦର
ଆନନ୍ଦେ ମଧୁର ନୃତ୍ୟ କରେନ ପ୍ରଭୁର ହେ ।
ଧୀରେ ଧୀରେ ଜଗନ୍ନାଥ କରେନ ଗମନ
ଆଗେ ନୃତ୍ୟ କରି ଚଲେ ଶଚୀର ନନ୍ଦନ ହେ ।

ଅ— ବହନା ନା ଯାଏ,
ସେ ବାଲ ଶୋଭନ ତାଏ, ବହନା ନା ଯାଏ ।
ଆଗେ ଗୋର ପିଛେ ବାଳ
ଧୀରେ ଧୀରେ ଚଲିଯାଏ, ବହନା ନା ଯାଏ ।

—୨୩—

ଝୁ— ଜଗନ୍ନାଥେ ମଗ୍ନ ପ୍ରଭୁର ନୟାନ ହୃଦୟ
ଶ୍ରୀମୁଖରେ ଗାଏ ଗୀତ ହସ୍ତେ ଅଭିନୟ ।
ନାଚତେ ନାଚତେ ପ୍ରଭୁ ହଇଲ ଭାବାନ୍ତର
ବଲଗଣ୍ଡି ସ୍ଥାନେ ରଥ ମିଲଲ ସଧୀର ।
ନୃତ୍ୟ ସାଙ୍ଗ ମହାପ୍ରଭୁ ଉପବନେ ଗେଲ
ପ୍ରେମାବେଶେ ଉପବନ ପିଣ୍ଡାରେ ଶୁଇଲ ।
ଯତ ଭକ୍ତ ଖାଣ୍ଡିକୟାଁ ଅସିୟାଁ ଅଶ୍ରମ
ପ୍ରତି ବୃକ୍ଷ ତଲେ ସର୍ବେ କରେନ ବିଶ୍ରାମ ହେ ।

ଅ— ଅଦ୍ୟାବଧି ଯେଇ ଲୀଳା,
ଭକ୍ତ ଗୋଷ୍ଠି କରେ ଖେଳା, ଅଦ୍ୟାବଧି ଏଇ ଲୀଳା ।
ରଥ ଯାତ୍ରା ଦେଖି ତାର, ଅଦ୍ୟାବଧି ଏଇଁ ଲୀଳା ।

—୨୪—

## ପ୍ରତାପରୁଦ୍ର ମିଳନ

ପ— ଯେଖାନେ ପ୍ରତାପରୁଦ୍ର ପାଇଲ ଦର୍ଶନ
ଐଶ୍ୱର୍ଯ୍ୟ ଦେଖାଇ ପ୍ରଭୁ କୈଲ କୃପାଦାନ ହେ ।
ସେଇ ତ କହଇ ପ୍ରଭୁର ମହା ହଙ୍ଗାମିନ
ଚୈତନ୍ୟ ନାଟକେ ରୂପ ଗୋସାଇଁ ଲେଖନ ହେ ।

ସେହି ଯେଇ ଶୁଣେ ସେଇ ଶ୍ରୀ ଚୈତନ୍ୟ ପାୟ
ସୁଦୃଢ଼ ବିଶ୍ୱାସ ସହ ପ୍ରେମେ ଭକ୍ତି ପାୟ ହେ ।
ଶ୍ରୀରୂପ ରଘୁନାଥ ପଦେ ଯାର ଅଶ
ଚୈତନ୍ୟ ଚରିତାମୃତେ କହେ କୃଷ୍ଣ ଦାସ ହେ ।
ଅ— ଜଗତେ କରୁନା କରି,
ନବଦ୍ୱୀପରେ ବିହରି, ଜଗତେ କରୁନା କରି ।
ହୃଦେ ପ୍ରେମର ଉଦୟ, ଜଗତେ କରୁନା କରି ।
ନାମକଳ୍ପତରୁ ଛେକ ତାରି, ଜଗତେ କରୁନା କରି ।

—୨୫—

## ନୀଳାଚଳରୁ ନବଦ୍ୱୀପବାସୀ ଗମନ

ଶ୍ଳୋକ—ଶ୍ରୀନବଦ୍ୱୀପ ବାସୀନୋ ସ୍ୱଦେଶେ ଯଦ ଗଚ୍ଛତ,
କୃପାଦୃଷ୍ଟ୍ୟା ଶ୍ରୀଚୈତନ୍ୟଂ ନାମ ପ୍ରଗୃହଣଂ କୃତାନ୍ ।
ଅ— କରହ ଶ୍ରବଣ ଗୌର ଭକ୍ତଗନ
ଗୁଣ୍ଡିଚାରେ ଜଗନ୍ନାଥ ହେ,
ରଥରୁ ଓହ୍ଲାଇ ତିନ ମୂର୍ତ୍ତି ଯାଇ
ବଳଭଦ୍ର ସୁଭଦ୍ରା ସାଥ ହେ ।
ନବଦିନ ରହି ପୂର୍ବାଶ୍ରମେ ଯାଇ
ଦର୍ଶି ଗୌର ଭକ୍ତ ଗନ ହେ,
ଗାୟନ ନର୍ତ୍ତନ କରି ସଂକୀର୍ତ୍ତନ
ଆନନ୍ଦ ସବାଇ ମନ ହେ ।
ଅ— ନା ଯାଏ କଥନ,
ଅସଂଖ୍ୟ ଭକ୍ତଙ୍କ ନାମ, ନା ଯାଏ କଥନ ।
ସବେ କୀର୍ତ୍ତନେ ପ୍ରବୀନ, ନା ଯାଏ କଥନ ।

—୨୬—

ଝୁ— ଚତୁର୍ମାସ୍ୟ ସବେ ରହ ପ୍ରଭୁ ସଙ୍ଗେ
ସ୍ତବେ ହୋଇଣ ବସ୍ତେର ହେ,
ନବଦ୍ୱୀପେ ଯାଇତେ ପ୍ରଭୁର ସାକ୍ଷାତେ
ଭକ୍ତଚରନ ଯୋଡ଼େ କର ହେ ।
ଅ— ବଦାୟ ଗୃହେଁ,
ସବ ଭକ୍ତ ନବେଦୟେ, ବଦାୟ ଗୃହେଁ ।
ନିତ୍ୟାନନ୍ଦରେ ଜାନାୟେ, ବଦାୟ ଗୃହେଁ ।

—୨୭—

ପଦ— ତବେ ମହାପ୍ରଭୁ ସର୍ବ ଭକ୍ତେ ବୋଲଇଲ
ଗୌଡ଼ ଦେଶେ ଯାଓ ସର୍ବେ ବଦାୟ କରିଲ ହେ ।
ସବାରେ କହେନ ପ୍ରଭୁ ପ୍ରତ୍ୟହ ଅସିୟା
ଗୁଣ୍ଡିଚ୍ଚ ଦେଖିୟା ଯାହ ଅମାରେ ମିଲିୟା ହେ ।
ଅଗ୍ରଜେରେ ଅଜ୍ଞା ଦିଲ କରିୟା ସମ୍ମାନ
ଅଗ୍ରଣ୍ଡାଳରେ କରହ କୃଷ୍ଣ ନାମ ଦାନ ହେ ।
ନିତ୍ୟାନନ୍ଦେ ଅଜ୍ଞା ଦିଲ ଯାହ ଗୌଡ଼ ଦେଶ
ଅନର୍ଗଲ ପ୍ରେମ ଭକ୍ତି କରହ ପ୍ରକାଶ ହେ ।
ଅ— ଯେୟ ଭିକ୍ଷା ମାଗି ସବାରେ,
ହରିନାମେର ପ୍ରଗୃରେ, ଯେୟ ଭିକ୍ଷା ମାଗି ସବାରେ ।
ଅନେ ଗଢ ନାହିଁ ଯେୟ କଲିକାଲେ, ଯେୟ ଭିକ୍ଷା ମାଗି ସବାରେ ।
ଶୁନି ସର୍ବ ଭକ୍ତ ଉଚେ ହରି ବୋଲେ, ଯେୟ ଭିକ୍ଷା ମାଗି ସବାରେ ।

—୨୮—

ଡ— ମଧ୍ୟେ ମଧ୍ୟେ ଅମି ତୁମା ନିକଟେ ଯାଇବ
ଅଲକ୍ଷିତେ ଗିୟା ତୁମା ନର୍ତ୍ତନ ଦେଖିବ ହେ ।

ଶ୍ରୀବାସ ପଣ୍ଡିତେ ପ୍ରଭୁ କରି ଆଲିଙ୍ଗନ
କଣ୍ଠ ଧରି କହେ ତାରେ ମଧୁର ବଚନ ହେ ।
ତୁମାର ଗୃହେ ଥାଉଁନେ ଆମି ନିତ୍ୟ ନାଚବ
ତୁମ ଦେଖା ପାବ ଆର କେଉ ନା ଦେଖିବ ହେ ।
ଆ— ସଦା କର ନାମ ଧ୍ୱନି, ଭକ୍ତ ଗୋଷ୍ଠି ସଙ୍ଗେ ଯେନ ।
ତୁମାର ସାଥେ ନାଚବ ଆମି, ସଦା କର ନାମ ଧ୍ୱନି ।
ମୋର ସତ୍ୟ ବଚନ ମାନି, ସଦା କର ନାମ ଧ୍ୱନି ।
ହରିବୋଲ ଗାଏ ଭକ୍ତେ ଶୁଣି, ସଦା କର ନାମ ଧ୍ୱନି ।

—୨୯—

ଶଚୀମାତାକେ କି ବାର୍ତ୍ତା ଦଲେ ?

ଆ— ଏଇ ବସ୍ତ୍ର ମାତାକେ ଦିବ ଏଇ ସର୍ବ ପ୍ରସାଦ
ଦଣ୍ଡବତ କହିଓ କ୍ଷମାଇବ ଅପରାଧ ହେ ।
ତା ସେବା ଛାଡ଼ିଯାଁ ମୁଇଁ କରିଛେ ସନ୍ନ୍ୟାସ
ଧର୍ମ ନହେ କୈଲ ଆମି ନିଜ ଧର୍ମ ନାଶ ହେ ।
ନୀଳାଚଳେ ଆଛି ମୁଇଁ ତାହାର ଆଜ୍ଞାତେ
ମଧ୍ୟେ ମଧ୍ୟେ ଯାଏ ତାର ଚରଣ ଦେଖିତେ ହେ ।
ନିତ୍ୟ ଆମି ଦେଖିଯାଇ ତାହାର ଚରଣେ
ସ୍ୱପ୍ନ ଜ୍ଞାନେ ମାଏ ତାହା ସତ୍ୟ ନାହିଁ ମାନେ ହେ ।
ଆ— ଯେତ୍ନ କରେନର କାଥା ଶୁନ—
ମାତା ସ୍ନେହେ ମୁଁ ବନ୍ଧନ, ଯେତ୍ନ କରେନର କଥା ଶୁନ ।
ଯାଇ ତୁହଁ ଯେ ପ୍ରମାନ, ଯେତ୍ନ କରେନର କଥା ଶୁନ ।
ଆମି କରିଛେ ଭୋଜନ, ଯେତ୍ନ କରେନର କଥା ଶୁନ ।

—୩୦—

ଝୁ— ଯେକଦନେ ଶାଲ୍ୟାନ୍ନ ପାଞ୍ଚ ସାତ ବ୍ୟଞ୍ଜନ
ବାଲଗୋପାଲରେ ମାୟେ କର ସମର୍ପଣ ହେ ।
ପ୍ରସାଦ ଲଇୟାଁ ମାୟେ କରୟେ କ୍ରନ୍ଦନ
ଜମାଇର ପ୍ରୀତ ମୋର ଯେସବ ବ୍ୟଞ୍ଜନ ହେ ।
ଜମାଇଁ ନାଇକ ଘରେ କେ କରୁ ଭୋଜନ
ମୋର ଧ୍ୟାନେ ଅଶ୍ରୁଜଲ ଭରଲ ନୟାନ ହେ ।
ଅ— ଅହା ମୋ ଜମାଇଁ ବୋଲ,
ବେଜନେହେ ଅଶ୍ରୁ ଝର, ଅହା ମୋ ଜମାଇଁ ବୋଲ ।
ଲୋଟୟେ ଧରଣୀ ଗଡ଼, ଅହା ମୋ ଜମାଇଁ ବୋଲ ।

— ୩୧ —

ଯେକାଲେ କ ହଇଲ ?

ଝୁ— ଶୀଘ୍ର ଯାଇଁ ମୁହିଁ ତାହା କରଇ ଭୋଜନ
ଶୂନ୍ୟପାତ୍ର ଦେଖେ ଅଶ୍ରୁ କରୟାଁ ବର୍ଜନ ହେ ।
କେ ଅନ୍ନ ବ୍ୟଞ୍ଜନ ଖାଇଲ ଶୂନ୍ୟ କେନ ପାତ୍ର
ପୁନଃସ୍ୱବେ ବାଲଗୋପାଲ ଖାଇଲ ସମସ୍ତ ହେ ।
କବା ମୋର ମନ ବୃଥା ଭ୍ରମ ହଇ ଗେଲ
କବା କୋନ ଜନ୍ତୁ ଅସି ସକଲ ଖାଇଲ ହେ ।
କବା ଅମି ଅନ୍ନ ଭ୍ରମେ ପାତ୍ରେ ନା ବାଢ଼ିଲ
ଅତ ସ୍ୱବ ପାକଶାଲ ଯାଇୟାଁ ଦେଖିଲ ହେ ।
ସେ ବଞ୍ଜୟା ଦଣମିତେ ହଇଛେ ଏ ସାଠ
ତାରେ ବୁଝାଇୟାଁ ତାରେ କରଅ ପ୍ରତୀତ ହେ ।
ସେଇମତ କରେ ଯବେ ଉତ୍ତମ ବ୍ରାହ୍ମଣ
ମୋରେ ଶୁଅଇତେ କରେ ଉତ୍କଣ୍ଠେ କ୍ରନ୍ଦନ ହେ ।

ଅ— ତାର ଗୁଣେ ବନ୍ଧା ମୁହିଁ,
ଶାଲ୍ମଳେ ଅଛ ରହି, ତାର ଗୁଣେ ବନ୍ଧା ମୁହିଁ ।
କଟ୍ୟ ଦରଶନେ ଯାଇ, ତାର ଗୁଣେ ବନ୍ଧା ମୁହିଁ ।
ଅଶ୍ରୁନେତ୍ରେ ପ୍ରଭୁ କହି, ତାର ଗୁଣେ ବନ୍ଧା ମୁହିଁ ।

—୬୨—

ଷ— ଯେତେକ କହନ୍ତେ ପ୍ରଭୁ ବହୁଲ ହଇଲ
ଛେକ ବଦା ଦଣ୍ଡେ ପୁନଃ ଧଇର୍ଯ୍ୟ ଧରିଲ ହେ ।
କୁଲୀନ ବାସୀଙ୍କି କହେ ସମ୍ମାନ କରିଣ୍ଟି।
ପ୍ରତ୍ୟହ ଅସ ଗୁଣ୍ଡିଚ୍ଚ ପାଟଡୋରି ଲଇଁ। ହେ ।
ତବେ ରାମାନନ୍ଦ ସତ୍ୟରାଜ ବେନି ଜନ
ପ୍ରଭୁର ଚରଣେ ମିଳି କରେ ନିବେଦନ ହେ ।
ଗୃହସ୍ଥ ବିଷୟୀ ଅମି କି ଅମା ସାଧନେ
ଶ୍ରୀମୁଖେ ଅଜ୍ଞା କର ପ୍ରଭୁ ନିବେଦ ଚରଣେ ହେ ।
ପ୍ରଭୁ କହେ କୃଷ୍ଣ ସେବା ବୈଷ୍ଣବ ସେବନ
ନିରନ୍ତର କର କୃଷ୍ଣ ନାମ ସଂକୀର୍ତ୍ତନ ହେ ।

ଅ— କଳିଯୁଗେ ଧର୍ମ ଯେହି,
ନାମ ବିନେ ଗତି ନାହିଁ, କଳିଯୁଗେ ଧର୍ମ ଏହି ।
ସବ ଭକ୍ତେ ଗୃହି କହି, କହିଯୁଗେ ଧର୍ମ ଏହି ।

—୬୩—

## ଭକ୍ତପ୍ରତି ଉପଦେଶ

ଶ୍ଳୋକ—ଅନ୍ୟଭିଳାଷିତା ଶୂନ୍ୟଂ ଜ୍ଞାନ କର୍ମେଣ କବୃତ୍ତ୍ୟଂ ।
ଅନୁକୂଲ୍ୟାନଂ କୃଷ୍ଣାନଂ ଶୀଳନଂ ଭକ୍ତି ଉତ୍ତମାତ୍ ।

ପଦ— ଅନ୍ୟ ଅଭିଳାଷ ଛାଡ଼ି    ଜ୍ଞାନ କର୍ମ ପରିହରି
କାୟମନେ କରିବ ଭଜନ
ସାଧୁସଙ୍ଗ କୃଷ୍ଣ ସେବା    ନା ପୂଜିବ ଦେବ ଦେବୀ
ଯେଇ ଭକ୍ତି ପରମ କାରଣ ।
ମହାଜନ ଯେଇ ପଥ    ତାତେ ହେବ ଅନୁଗତ
ପୂର୍ବାପର କରିଯେ ବିଚାର
ସାଧନ ସ୍ମରଣ ଲୀଳା    ଇହାତେ ନା କର ହେଳା
କାୟମନେ କରିହ ସୁସାର ହେ ।
ଅସତ୍ ସଙ୍ଗ ସଦା ତ୍ୟାଗ    ଛାଡ଼ି ଅନ୍ୟ ଗୀତାରଙ୍ଗ
କର୍ମଜ୍ଞାନୀ ପରିହରି ଦୂରେ
କେବଳ ଭକତ ସଙ୍ଗ    ପ୍ରେମ ଭକ୍ତି ରସ ରଙ୍ଗ
ଲୀଳା କଥା ବ୍ରଜରସ ପୁରେ ।
ଯୋଗୀ ନ୍ୟାସୀ କର୍ମଜ୍ଞାନୀ    ଅନ୍ୟ ଦେବପୂଜକ ଧ୍ୟାନୀ
ଇହଲୋକ ଦୂରେ ପରିହରି
କର୍ମ ଧର୍ମ ଦୁଃଖ ସ୍ୱଗ    ଯେବା ଥାକେ ଅନ୍ୟ ଯୋଗ
ଛାଡ଼ି ଭଜ ଗିରିବରଧାରୀ ।
ତୀର୍ଥ ଯାତ୍ରା ପଥଶ୍ରମ    କେବଲ ମନେର ଭ୍ରମ
ସର୍ବସିଦ୍ଧି ଗୋବିନ୍ଦ ଚରଣ
ଦୃଢ଼ ବିଶ୍ୱାସ ମନେ କରି    ମଦ ମାତ୍ସର୍ଯ୍ୟ ପରିହରି
ସଦା କର ଅନ୍ୟାନ୍ୟ ଭଜନ ।
କୃଷ୍ଣ ଭକ୍ତ ସଙ୍ଗ କରି    କୃଷ୍ଣେର ସେବା ଆଚରି
ଶ୍ରଦ୍ଧା ନତ ଶ୍ରବଣ କୀର୍ତ୍ତନ
ଅର୍ଚ୍ଚନ ବନ୍ଦନ ଧ୍ୟାନ    ନବବିଧ ଭକ୍ତି ଜ୍ଞାନ
ଯେଇ ଭକ୍ତି ପରମ କାରଣ ହେ ।

ଅ— ଅନେ ଗଡ ନାଇଁ ଗଡ ନାଇଁ,
ଜଳସ୍ଥଳେ ଅନେ ଜାହିଁ, ଗଡ ନାଇଁ ଗଡ ନାଇଁ ।
ହରି ନାମ ବନେ ଜାହିଁ, ଗଡ ନାଇଁ ଗଡ ନାଇଁ ।
ସ୍ୱରୁ ଗୋବନ୍ଦ ବନେ ଜାହିଁ, ଗଡ ନାଇଁ ଗଡ ନାଇଁ ।

—୩୪—

ସୁ— ଯେଉଁମତ ସର୍ବ ଭକ୍ତେ କହୁ ଶେଷ ସୁଣ
ସବାରେ ବଦାସ୍ତବେଡେ କରନ୍ତ ସମ୍ମାନ ହେ ।
ପ୍ରଭୁ ବନ୍ଦେହେ ସର୍ବ ଭକ୍ତେ କରନ୍ତ ବନ୍ଦନ
ଭକ୍ତ ବନ୍ଦେହେ ପ୍ରଭୁର ଅକୁଳତ ମନ ହେ ।
ଗଦାଧର ମୁକୁନ୍ଦ ଦତ୍ତ ପ୍ରଭୁ ପାଶେ ରହିଲ
ପୁରୀ ଗୋସାଇଁ ଜଗଦାନନ୍ଦ ସ୍ୱରୂପ ଦାମୋଦର ହେ ।
ଯେଉଁ ସବା ସଙ୍ଗେ ପ୍ରଭୁ ନୀଳାଚଳେ ରହିଲେ
ଭକ୍ତ ଚରନ ବନ୍ଦେ ଲେଖା ଚୈତନ୍ୟ ମଙ୍ଗଳେ ହେ ।

ଅ— କରହ ଶ୍ରବନ,
ଅହେ ଗୌର ଭକ୍ତଗନ, କରହ ଶ୍ରବନ ।
ଭଟ୍ଟାଗ୍ରର୍ଯ୍ୟର ବର୍ଣ୍ଣନ, କରହ ଶ୍ରବନ
ଅମୋହ ଜୀବନ ଦାନ, କରହ ଶ୍ରବନ ।

—୩୫—

## "ଅମୋହ ଜୀବନ ଦାନ

ଶ୍ଲୋକ—ସାର୍ବଭୌମ ଗୃହେ ଭୁଞ୍ଜନ୍ ସ୍ୱନନ୍ଦକଂ ଅମୋହକମଂ
ଅଙ୍ଗୀକୁର୍ବନ୍ ଷଠ୍ ରଙ୍ଗୈଃ ଗୌରସ୍ୟାତ୍ ଭକ୍ତବଶ୍ୟତାଂ ।

ଅ— ଯେଉଁ ଦନେ ସାର୍ବଭୌମ ପ୍ରଭୁରେ କରି ନମନ୍ତ୍ରଣ
ନିଜ ଗୃହେ ଭୋଜନ କରାଏ

ଷାଠୀମାୟେ ଯତ୍ନ କରି ଶାଲ୍ୟାନ୍ନ ପିଠା ଖିରି ପୁରି
ନାନାବିଧ ଯୋଗାଡ଼ ଯୋଗାୟେ ।
ପ୍ରଭୁ ଭିକ୍ଷାଗୃହେ ବସି ଭୋଜନ କରେ ବିଶେଷ
ସ୍ନେହେ ଷାଠୀମାତା ପରଶୟେ,
ଜାମାତା ଅମୋଘ ଅଛି ଭୋଜନ କରଇ ତହିଁ
ଅମୋଘ ଦେଖି ବିକାର ବାଡ଼ୟେ ।

ଅ— ମନେ ଭାବେ ସେବ ଜନ,
କେତେ କରୟେ ଭୋଜନ, ମନେ ଭାବେ ଏକ ଜନ,
ନ ଜାଣେ ପ୍ରଭୁର ଗୁଣ, ମନେ ଭାବେ ଏକ ଜନ ।

—ଗଟ—

ଝୁ— ପ୍ରଭୁ ନନ୍ଦା ସାର୍ବଭୌମ ଶୁଣିଅଛି କରେ ଭର୍ତ୍ସନ
ଲଠି ଧରି ଅମୋଘେ ଗୋଡ଼ାୟି
ଗୋଡ଼ାଇ ନା ପାରି ତାରେ ଶାପ ଦଏ କ୍ରୋଧଭରେ
ଲଟି ଫିଙ୍ଗେ ଖାଅ ରେ ବୋଲୟି ।
ଭୋଜନ ସାରୟି ପ୍ରଭୁ ଅଚମନ କରେ ତହିଁ
ନୈବେଦ ବସନେ ମୁଖ ମୁଛି
ଚଳିଗଲେ ନିଜ ବାସେ ସାର୍ବଭୌମ ଉପବାସେ
ଦୁଃଖେ ବସି ପୁଅଇଲ ନିଶି ।
ଅମୋଘ ଭୟେ ପାଳିଇଲ ପ୍ରାତେ ବିସୂଚିକା ହଇଲ
ପ୍ରାଣ ବିସର୍ଜିଲ ତତକ୍ଷଣେ,
ସାର୍ବଭୌମ ଷାଠୀମାତା ଅନନ୍ଦ ଶୁଣି ଏ କଥା
ପ୍ରଭୁ ଦୋଷୀ ଏ ଦଣ୍ଡ ବିଧାନେ ।

ଅ— ଅପଣା ଦୋଷେ ଏ ଜାଣ,
ଯଥାଯୋଗ୍ୟ ଦଣ୍ଡ ବିଧାନ, ଅପଣା ଦୋଷେ ଏ ଜାଣ ।
ମନେ ଭାବେ ସାର୍ବଭୌମ, ଅପଣା ଦୋଷେ ଏ ଜାଣ ।

—ଷ.୭—

ପଦ— ଅମୋଘର ମୃତ୍ୟୁବାଣୀ ଗୋପୀନାଥାଚାର୍ଯ୍ୟ ଶୁଣି
ପ୍ରଭୁ ପାଶେ ଧାଇଁଯାଇ ଚଳିଲ
କହେ ଚରଣେ କରେଧ ଅମୋଘ ହୋଇଲ ଅପରାଧୀ
ବସୁଚନ୍ଦ୍ରେ ପ୍ରାଣ ହାରାଇଲ ହେ ।
ଶୁଣ ଅଗ୍ରଜର କାଥା ପ୍ରଭୁ ମନେ ପାଏ ବ୍ୟଥା
ଭାବେ ଷାଠୀମାତା ଦୁଃଖ ପାବେ
ସେହୁ ଭକ୍ତସ୍ୱା ଦୟାମୟ ଶୀଘ୍ର ଉଠି ଚଳିପାୟ
ଅମୋଘର ମୃତ୍ୟୁ ସବ ଠାବେ ହେ ।
ଶୀଘ୍ରେ ବୁକେ ହାଥଦେଇଁ ଉଠ ଉଠ ରେ ବୋଲିଯାଇଁ
ଉଚ୍ଚସ୍ୱରେ କୃଷ୍ଣ କୃଷ୍ଣ ବୋଲ
ମାତ୍ସର୍ଯ୍ୟ ଗୃଣ୍ଡାଲ ଗେଲ ପ୍ରଭୁ ସ୍ପର୍ଶ ଯବେ ପାଇଲ
ଅମୋଘ ଚେତ ତଖନ ଉଠିଲେ ।

ଅ— ଦେଖି ସକଲେ ଅଶ୍ଚର୍ଯ୍ୟ,
ଶାନ୍ତିପୁରବାସୀ ସବ, ଦେଖି ସକଲେ ଅଶ୍ଚର୍ଯ୍ୟ ।
ଉଠେ ହରିବୋଲ ନାଦ, ଦେଖି ସକଲେ ଅଶ୍ଚର୍ଯ୍ୟ ।
ନାଚେ ଗୋପୀନାଥାଚାର୍ଯ୍ୟ, ଦେଖି ସକଲେ ଅଶ୍ଚର୍ଯ୍ୟ ।

—୩—

ଝୁ— ପୁଲକେ ପୂରୟେ ଅଙ୍ଗ କମ୍ପ ସ୍ୱେଦ ସ୍ୱରଭଙ୍ଗ
ପ୍ରେମୋନ୍ମାଦେ ଅମୋଘ ନାଚଇ

ପ୍ରଭୁର ଚରଣ ଧରେ   ଅପରାଧ କ୍ଷମ ବୋଲେ
ପ୍ରଭୁ ତାରେ ନିଜ ଭକ୍ତ କୈଲ ।
ଗୋପୀନାଥାଚାର୍ଯ୍ୟ ସନେ   ପ୍ରଭୁ ସାର୍ବଭୌମ ସ୍ଥାନେ
ଭଟ୍ଟାଚାର୍ଯ୍ୟ ଦେଖି ପ୍ରଣାମୟେ
ପ୍ରଭୁ ବୋଲେ ଏ ବଚନ   ଅମୋଘ ତୁମାର ପୁତ୍ର
ତା ଅପରାଧ ଧରିବାର ନୟେ ହେ ।
ଅମୋଘ ବାଳକ ମତି   ଅବେ ହୈଲ କୃଷ୍ଣ ଭକ୍ତ
ତୁମି ଯାଇ ଭୋଜନ କରହ
ପ୍ରଭୁ କହି ଚଲେ ବାସ   କହେ ଭକ୍ତଚରଣ ଦାସ
ପ୍ରଭୁପାଦେ ସେବକ ଅମୋଘ ହେ ।
ଧ— ଜଗନ୍ନାଥ ଗୌରହରି,
ଭକ୍ତଭାବେ ଅବତରି, ଜଗନ୍ନାଥ ଗୌରହରି ।
ନୀଳାଚଳେ ଲୀଳା କରି, ଜଗନ୍ନାଥ ଗୌରହରି ।

—୩୯—

ଇତି ଅଷ୍ଟମ ଭାଗ ସମାପ୍ତ



## ନବମ ଭାଗ

## ମହାପ୍ରଭୁଙ୍କ ନବଦ୍ୱୀପ ଗମନ

ଶ୍ଳୋକ—ଗୌଡ଼ାଙ୍ଗନଂ ଗୌରମେଘଂ
ସିଞ୍ଚନ୍ ସ୍ୱାଳୋକ ନାମାମୃତୈଃ ।
ଭବାଗ୍ନି ଦଗ୍ଧଜନତାଂ,
ବୀରୁଧଃ ସମ ଜୀବୟତ୍ ।

ଅ—	ଏକଦିନେ ପ୍ରଭୁ କହେ ଯିବି ବୃନ୍ଦାବନ
ଶୁଣିଣ ପ୍ରତାପରୁଦ୍ର ସବିସ୍ମୟ ମନ ହେ ।
ସାର୍ବଭୌମ ରାମାନନ୍ଦେ ଆଣି ଦୋଇ ଜନେ
ତୁହାଙ୍କେ କହେନ ରାଜା ବିନୟ ବଚନେ ହେ ।
ନୀଳାଦ୍ରି ଛାଡ଼ିୟା ପ୍ରଭୁ ଅନ୍ୟତ୍ର ଯାଇତେ
ତୁମାରା କରିହ ଯତ୍ନ ତାହାରେ ରାଖିତେ ହେ ।
ତାରି ବିନେ ରାଜପଦେ ଶୋଭା ନାହିଁ ହୟ
ପ୍ରଭୁରେ ରାଖିତେ କର ନାନାଦି ଉପାୟ ହେ ।

ଅ—	ମୋର ଏହି ନିବେଦନ,
କହେ ବିନୟ ବଚନ, ମୋର ଏହି ନିବେଦନ ।
ଗେଲେ କି ଆସିବେ ଆର
ଭବରାଜ୍ୟ ପ୍ରେମଧନ, ମୋର ଏହି ନିବେଦନ ।

—୧—

ପଦ—	ଏକଦିନେ ପ୍ରଭୁ ରାମାନନ୍ଦ ସାର୍ବଭୌମେ
ଡାକିୟା ବୋଲେନ ପ୍ରଭୁ ଯିବି ବୃନ୍ଦାବନେ ହେ ।
ତୁହେଁ କହେ ରଥଯାତ୍ରା କରିହ ଦର୍ଶନ
କାର୍ତ୍ତିକ ହଇଲେ ସୁଖେ ଯାବ ବୃନ୍ଦାବନ ହେ ।

କାର୍ତ୍ତିକ ହଇଲେ କହେ ହବେ ମହାଶୀତ
ଦୋଲଯାତ୍ରା ଦେଖି ଯାବ ହବେ ସୁଲଗତ ହେ ।
ଅଦ୍ୟକାଲି କରି ଭଣ୍ଡାୟେ ବିବିଧ ଉପାୟେ
ଯିବ ନା ଦେୟ ପ୍ରଭୁରେ ବିଚ୍ଛେଦେର ଭୟେ ହେ ।
ପୁନରପି ଗୁଣ୍ଡିଚା ଯାତ୍ରା ଆସିୟାଁ ହଇଲ
ନବଦ୍ୱୀପୁ ଅଦ୍ୱୈତାଦି ନିତ୍ୟାନନ୍ଦ ଆଇଲ ହେ ।
ଗୁଣ୍ଡିଚା ଦର୍ଶନେ ସବେ ଚଲେ ଯେଇସ୍ଥାନେ
ଚତୁର୍ଥ ବରଷେ ପ୍ରଭୁ ଚଳିଲ ବୃନ୍ଦାବନେ ହେ ।

ଅ— କରହ ଶ୍ରବନ,
ଅହେ ଗୌର ଭକ୍ତଗନ, କରହ ଶ୍ରବନ ।
ପୁନଃ ନଦୀୟା ମିଲନ, କରହ ଶ୍ରବନ ।

—୨—

ପ— ରାମାନନ୍ଦେ ସାର୍ବଭୌମେ ବିଦାୟ ମାଗିୟାଁ
ପ୍ରାତେ ସ୍ନାନ କରି ଭୁବନେଶ୍ୱରତେ ମିଲୟାଁ ହେ ।
ଗଦାଧର ଶ୍ରୀନିବାସ ଧାୟେଁ ପ୍ରଭୁ ସାଥେ
ଭଟ୍ଟାଚାର୍ଯ୍ୟ ରାମାନନ୍ଦାଦି କତ ଭକ୍ତ ପିଛେ ହେ ।
କଟକେ ଗୋପାଲେ ଯାଇଁ କରେ ଦରଶନ
ପ୍ରତାପରୁଦ୍ର ରାଜା ଆସି କରୟେ ପ୍ରଣାମ ହେ ।
ବିନୟ ହୋଇୟାଁ ରାଜା ତାହାଁ ରହାଇଲ
ସିଦ୍ଧବକୁଲ ମୂଳେ ପ୍ରଭୁ ଯାଇଁ ବିଜେ କୈଲ ହେ ।

ଅ— କରୟେ ପୂଜନ,
ରାଜା ଆନନ୍ଦିତ ମନ, କରୟେ ପୂଜନ ।
ସିଦ୍ଧବକୁଲେର ଧାମ, କରୟେ ପୂଜନ ।

—୩—

ଷ— କତଦିନ ରହି ପ୍ରଭୁ ସଙ୍ଗରେ ବଦାଇ
ନବତନ ନୌକେ ବେଲେ ଘାଟପାର ହୋଇ ହେ ।
ଗଦାଧର ପଣ୍ଡିତେ ବୋଧି ରାମାନନ୍ଦ ସଙ୍ଗେ
ନୌକା ଉତ୍ତରି ପ୍ରଭୁ ଚୌଦୁଆରେ ଲାଗେ ହେ ।
ପ୍ରାତସ୍ନାନ କରି ପ୍ରଭୁ ଚଳିଗଲେ ରଙ୍ଗେ
ରେମୁନାରେ ପ୍ରବେଶିଲେ ରାମାନନ୍ଦ ସଙ୍ଗେ ହେ ।
ରାୟକୁ ବିଦାୟ ଦିଅଁା ଚଳିଲ ପଥେତେ
ରାୟବ୍ୟସ୍ତେ ଫିରିଲ ମୁକୁନ୍ଦ ଯାଏ୍ଁ ପ୍ରଭୁସାଥେ ହେ ।
ଝାଡ଼ଖଣ୍ଡି ପ୍ରବେଶିତେ ଯେତେ ମହାପାନ
ଯବନ ଦେଶ ଭୟେ ଲୁହାଇଲ ପ୍ରଭୁସାଥ ହେ ।
ଯବନ ରାଜନ ଶୁନି ପ୍ରଭୁପାଶେ ମିଲେ
ପୂର୍ବର ସ୍ୱଭାବ ଛାଡ଼ି କୃଷ୍ଣ କୃଷ୍ଣ ବୋଲେ ହେ ।
ନୂତନ ନଉକା ଲଇ ଗଙ୍ଗାପାର କୈଲ
ନଦୀ ପାର ହୈତେ ପାନହାଟତେ ମିଳିଲ ହେ ।

ଅ— ରାଘବ ପଣ୍ଡିତ ସ୍ଥାନେ,
ଶୁନିଲ ସକଲ ଜନେ, ରାଘବ ପଣ୍ଡିତ ସ୍ଥାନେ ।
ଧାଏଁ ପ୍ରଭୁର ଦର୍ଶନେ, ରାଘବ ପଣ୍ଡିତ ସ୍ଥାନେ ।

—୪—

ଝୁ— କେବଳଭିଡ଼ ହଇଲ ଯବେ କୁଲନେ ଅଇଲ
ଲକ୍ଷକୋଟି ଲୋକ ତାତେ ହୋଇଲ ସୁମେଲ ହେ ।
ସାତଦନ ରହି କତ ଲୋକ ନିସ୍ତାରିଲ
ଶାନ୍ତିପୁରେ ଅଦ୍ୱୈତେର ଗୃହେ ପ୍ରବେଶିଲ ହେ ।
ଶଚୀମାତାରେ ମିଳିୟାଁ ଦୁଃଖ ମେଣ୍ଟାଇଲ
ତବେ ରାମକେଳଗ୍ରାମେ ପ୍ରଭୁ ଚଳିଗେଲ ହେ ।

ନାଟଶାଳ ହେତେ ଦଶଦନ ରହୁ ଚଳେ
ନିତ୍ୟାନନ୍ଦେ ଅଦ୍ୱୈତେ କହନ୍ତୁଁ ତହୁଁ ଫିରେ ହେ ।
ପୁନରପି ଅସି ପ୍ରଭୁ ମିଲେ ନୀଳାଚଳେ
ଭକ୍ତ ଚରନ କହେ ଲେଖା ଚୈତନ୍ୟ ମଙ୍ଗଳେ ହେ ।

ଅ— କରହ ଶ୍ରବନ,
ବ୍ରଜ ଉପାସିକ ଜନ, କରହ ଶ୍ରବନ ।
ପୁନ ବ୍ରଜେ ଅଗମନ, କରହ ଶ୍ରବନ ।
ନୀଳାଦ୍ରି ଫେରିବା ପୁନ, କରହ ଶ୍ରବନ ।

—୫—

## ଶ୍ରୀ ବୃନ୍ଦାବନ ଗମନ

ଶ୍ଳୋକ— ଗଚ୍ଛନ୍ ବୃନ୍ଦାବନଂ ଗୌରେ
ବ୍ୟାଘ୍ର ଭୟେନ ଖଗାନ୍ ବନେ
ପ୍ରେମୋନ୍ମତ୍ତାନ୍ ସହାନ୍ନୃତ୍ୟାନ୍
ବିଦଧେ କୃଷ୍ଣ ଜଳ୍ପିନଃ ।

ଅ— କରହ ଶ୍ରବନ ଗୌର ଭକ୍ତଗନ
ଶ୍ରୀ ବୃନ୍ଦାବନ ଗମନ ହେ,
ନବଦ୍ୱୀପୁଁ ଫେରି ଅଇଲ ଗୌରହରି
ଅନନ୍ତ ଭକ୍ତଗନ ହେ ।
ଯାବ ବୃନ୍ଦାବନ ସ୍ୱବସ୍ୟେ ଯଖନ
ସାର୍ବଭୌମ ରାମାନନ୍ଦ ହେ,
ନିଷେଧସ୍ୟେ କତ ସେ ଅଗମ୍ୟ ପଥ
ଅମି ଭୂମାସଙ୍ଗେ ଯାବ ହେ ।

ନାସ୍ତି କରେ ପ୍ରଭୁ ଯେବା ଅସ୍ପ ଯାବୁଁ
ତାରେ ନା ଲଇବ ସାଥ ହେ,
ଭଟ୍ଟାଚାର୍ଯ୍ୟ କହେ ଇହ ବଧି ନଯେ
ବହୁବାସ ଜଲ ପାତ୍ର ହେ ।
ଯେଇ ବଳଭଦ୍ର ଅଗ୍ରଜ ପ୍ରହ୍ଲିଜ
ସଙ୍ଗେ କର ଅଙ୍ଗୀକାର ହେ ।
ଯେ ଇଚ୍ଛା ତୁମାର କର୍ତ୍ତବ୍ୟ ଅମାର
ତହ ନେବୁ ମାର ସ୍ୱରେ ହେ ।

ଅ— ଅବୁଲେ ଅଗ୍ରଜ,
ରମାନନ୍ଦ ଡେକେ ଧୈର୍ଯ୍ୟ, ଅବୁଲେ ଅଗ୍ରଜ ।
କାନ୍ଦେ ଭକ୍ତଗନସବ, ଅବୁଲେ ଅଗ୍ରଜ ।

—୨—

ସୁ— ଦେଖି ଜଗନ୍ନାଥେ ଭଟ୍ଟାଚାର୍ଯ୍ୟ ସାଥେ
ଗନ୍ଧୁ ଉଠି ଚଲେ ପଥେ ହେ,
କଟକ ତାହିନେ ବନପଥେ ଭ୍ରମେ
ବଳଭଦ୍ର ଭଟ୍ଟ ସାଥେ ହେ ।
ବାଟେ ବ୍ୟାଘ୍ରଗଣ କରଯେ ଗର୍ଜନ
ପ୍ରଭୁ କହେ ବୋଲ କୃଷ୍ଣ ହେ,
ଶୁନି ବନଜୀବ କୃଷ୍ଣ ବୋଲେ ସବ
ଚଲେ ପ୍ରଭୁସଙ୍ଗେ ତୃଷ୍ଣ ହେ ।
ଦେଖି ଭଟ୍ଟାଚାର୍ଯ୍ୟ ମନରେ ଅଶ୍ଚର୍ଯ୍ୟ
ଭଯେ ବୋଲେ କୃଷ୍ଣନାମ ହେ,
ବ୍ୟାଘ୍ର ଶ୍ୱାପ୍ଦ କତ ଗଜ ଯୂଥ ଯୂଥ
ସବେ ପ୍ରେମତେ ନର୍ତ୍ତନ ହେ ।

ଅ— ହେ ହଂସା ନ କର,
ଚଳେ ପ୍ରଭୁ ମୁଣ୍ଡ ହେର, ହେ ହଂସା ନ କର ।
ନାଚେ କୃଷ୍ଣ କୃଷ୍ଣ ବୋଲ, ହେ ହଂସା ନ କର ।

—୭—

ଅ— କତଦିନେ ଯାଇ କାଶୀତୀର୍ଥେ ହଲ
ଶ୍ରୀଚନ୍ଦ୍ରଶେଖର ମିଳେ ହେ,
କରୟେ ପ୍ରଣାମ ପ୍ରଭୁର ଚରଣ
ସ୍ନେହେ ଅଲିଙ୍ଗିଅଁ ତାରେ ହେ ।
ପ୍ରଭୁ ରୂପ ଯତ ଦେଖି ଝପ୍ର ଏକ
ପ୍ରକାଶାନନ୍ଦରେ କହୁ ହେ,
ସେହୁ ଶୁକ ବୋଲେ ଲେକେ ବର୍ଣ୍ଣିବାରେ
ଅସିଛୁ ଏଥେ କମାଇଁ ହେ ।
ଲଗାଇ ଭେଲକି ଜପେ ନାମ କାହ୍ନ
ଜାନଛେ ଅମି ତା ରୂପ ହେ ।
ନବଦ୍ୱୀପବାସୀ ନ ମାନବା ଦେଖି
କୈଲ ସନ୍ନ୍ୟାସ ଧାରନ ହେ ।

ଅ— ଅମି ଜାନ ତାଇ,
ଜଗନ୍ନାଥ ମିଶ୍ର ପୁତ୍ର ସେଇ, ଅମି ଜାନ ତାଇ ।
ଅସିଛେ ଏଥେ ଭୁଲଇ, ଅମି ଜାନ ତାଇ ।
କାଶୀତୀର୍ଥେ ନବଜାଇ, ଅମି ଜାନ ତାଇ ।

—୮—

ଫୁ— ଶୁକ ସେହୁ ବଚ୍ଚ ପ୍ରଭୁର ଅଚ୍ଛତ
କହେ ସବ ବିବରୟୁଁ,

ପ୍ରଭୁ ବୋଲେ ତାରେ ଅଛିଛେ କେପାରେ
ନବ ଜ୍ୱର ବୋଝ ଲୟୀ ହେ ।
ତହୁଁ ଚଳ ଶୀଘ୍ରେ ମିଳିଲ ପ୍ରୟାଗେ
ମାଧବେ ଦର୍ଶନ କରି,
ତ୍ରିବେଣୀରେ ସ୍ନାନ କରୟୀ ଗମନ
ମଥୁରା ଧାମତେ ମିଳି ହେ ।
କେଶବ ପଣ୍ଡା ନାମ ଏକଇ ବ୍ରାହ୍ମଣ
ମାଧବ ପଣ୍ଡାର ଶିଷ୍ୟ ,
ତାର ସାଥେ ଧରି ସର୍ବତୀର୍ଥେ ବୁଲି
ବୃନ୍ଦାବନେ ଯତ ଯତ ହେ ।

ଅ— କରିଲ ଭ୍ରମନ,
ପ୍ରଭୁ ଅନନ୍ଦତ ମନ, କରିଲ ଭ୍ରମନ ।
ଚଉରାଶି କୋଶ ଧାମ, କରିଲ ଭ୍ରମନ ।

—୯—

## ରାଧାକୁଣ୍ଡ ଉଦ୍ଧାର

୯— ଲୋକରେ ପୁଛଇ ରାଧାକୁଣ୍ଡ କାହିଁ
ସର୍ବେ ବୋଲେ ନା ଜାଣଇଁ,
ଚାଲି ପ୍ରଭୁ ପୁନ ଶ୍ୱେତ ପୂର୍ବ ଧାମ
କେବଳ ଧାନ୍ୟ କ୍ଷେତ୍ର ହୋଇ ହେ ।
ଚାହିଁ ପ୍ରଭୁ ତାରେ ଅପଣା ଶ୍ରୀକରେ
ସ୍ନେହ ତରଳ ସର୍ଜୟେ,
ଜୟ ରାଧେ ବୋଲୟୀ ମାଥା ବୁଲାଉଛୁଁ
ଉଚ୍ଚେ ବାକ୍ୟ ଉଚ୍ଚାରୟେ ହେ ।

ଶ୍ଳୋକ—ଯଥା ରାଧା ପ୍ରିୟା ବିଷ୍ଣୁ ତସ୍ୟାଂ କୁଣ୍ଡଂ ପ୍ରିୟଂ ତଥା
ସର୍ବଗୋପିଷୁ ସୈବୈକା ବିଷ୍ଣୁରତ୍ୟନ୍ତ ବଲ୍ଲଭଃ ।

ଝୁ— ସେ୍ନ ବାକ୍ୟ ଉଚ୍ଚାରି ମୁଣ୍ଡିକାଙ୍କ କୁଳ
ଛଳେକ ମାଖି ଅଙ୍ଗରେ,
ବଳଭଦ୍ର ଉତ୍ଛରେ ମୁଣ୍ଡିକାଙ୍କ ଦଳେ
ଭଗତ ଚରଣ ବୋଲେ ହେ ।

ଅ— ଅନନ୍ଦ ମନ,
ରାଧାକୁଣ୍ଡେ କରି ସ୍ନାନ, ଅନନ୍ଦ ମନ ।
କରଏ ବନ ଭ୍ରମନ, ଅନନ୍ଦମନ ।

—୧୦—

## ଶ୍ରୀ ବୃନ୍ଦାବନ ପରିକ୍ରମା

ଶ୍ଳୋକ— ଶ୍ରୀବୃନ୍ଦାବନସ୍ୟଂ ରସକେଳି ବାର୍ତ୍ତାଃ,
କାଳେନ ଲୁପ୍ତଂ ନିଜ ଶକ୍ତି ମୁତକ୍ ।
ସାଞ୍ଚାର୍ଯ୍ୟରୁପେ ବ୍ୟତନୋ ପୁନଷ୍ଟ,
ପ୍ରଭୁବଯୌ ପ୍ରାଗ୍ ବ୍ରଜ ଲେକ ସୃଷ୍ଟିମ୍ ।

ପଦ—ତଥା ହେଁତେ ଗୋବର୍ଦ୍ଧନ କରି ପ୍ରଭୁ ପରିକ୍ରମଃ
ଗୋପାଳ ଦେଖିଯାଁ ଭାବାବେଶ,
ପୁନ କାମ୍ୟବନେ ଯାଇଁ ନନ୍ଦୀଶ୍ୱରରେ ମିଳିଲ
ନନ୍ଦ ଯଶୋଦାରେ ଦେଖି ତୋଷ ହେ ।
ଯମୁନା ହଇଁଯା ପାରି ମିଳିଲେ ଗୋକୁଳ ପୁରୀ
କୃଷ୍ଣ ଜନ୍ମସ୍ଥାନେ ମିଳେ ଯାଇଁ,
ଦ୍ୱାଦଶ କାନନ ହେରି, ଅକ୍ରୁର ଘାଟରେ ମିଳି
ମଥୁରା ଦଗତେ ଚଳିଯାଇ ହେ ।

